

# ଗଳ୍ପ ମଞ୍ଜରୀ



ମୂଲ୍ୟ ଛଅ ଅଣା ମାତ୍ର ।

# ସୂଚନା

ମିସ୍ ଏ. ଏଲ୍. ଟମ୍ସନ୍ ଓଡ଼ିଆ ଖ୍ରୀଷ୍ଟୀୟ ସମାଜ ନିକଟରେ ଅପରିଚିତା ନୁହନ୍ତି । ସେ ବର୍ତ୍ତମାନ ଏ ମର୍ତ୍ତ୍ୟଜଗତରେ ନାହାନ୍ତି ସତ୍ୟ କିନ୍ତୁ ତାଙ୍କ ଫୁଲ-ସୁଗନ୍ଧ ତୁଲ୍ୟ ଜୀବନର ସୌରଭ ଏବେ ସୁଦ୍ଧା ଖ୍ରୀଷ୍ଟୀୟ ସମାଜରେ ମହକୁଛି । ତାଙ୍କ ସଂଯତ, କର୍ତ୍ତବ୍ୟନିଷ୍ଠ, ଋଷିତୁଲ୍ୟ ଜୀବନର ମହତ୍ ଆଦର୍ଶ ଆଜି ସୁଦ୍ଧା ଅନେକଙ୍କ ପ୍ରାଣରେ ଜାଗ୍ରତ ଓ ପ୍ରେରଣା ଆଣି ଦେଉଅଛି ।

କାର୍ଯ୍ୟରୁ ଅବସର ଗ୍ରହଣ କଲା ଉତ୍ତାରେ ସେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ନ କରି ଓଡ଼ିଶାର ଖ୍ରୀଷ୍ଟିୟାନ ଗ୍ରାମମାନଙ୍କରେ ନିରକ୍ଷର ନାରୀଗଣଙ୍କୁ ସାକ୍ଷର କରିବା କାର୍ଯ୍ୟରେ ଆପଣାକୁ ନିୟୋଜିତ କରିଥିଲେ । ଉତ୍କଳ ଖ୍ରୀଷ୍ଟୀୟ ସାହିତ୍ୟ ସମିତିର ସଭ୍ୟା ସ୍ୱରୂପେ ସେ ସରଳ ଭାଷାରେ ଖ୍ରୀଷ୍ଟୀୟ ସାହିତ୍ୟ ମୁଦ୍ରଣ ନିମନ୍ତେ ବହୁ ଉଦ୍ୟମ କରିଥିଲେ ।

ଏହି ପୁସ୍ତିକାରେ ଲିଖିତ ଗଳ୍ପଗୁଡ଼ିକ ତାଙ୍କର ଦ୍ୱାରା ସଂଗୃହୀତ ହୋଇଥିଲା । ଏଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶ କରିବାର ଆଶା ତାଙ୍କ ଜୀବଦ୍ଦଶାରେ ଫଳବତୀ ହୋଇ ପାରି ନ ଥିଲା । ଉକ୍ତ କାର୍ଯ୍ୟର ସୁବର୍ଣ୍ଣ ସୁଯୋଗ ବର୍ତ୍ତମାନ ମୋତେ ମିଳି ଥିବାରୁ ମୁଁ ଅତି ଆନନ୍ଦ ସହକାରେ ତହିଁର ସଂଶୋଧନ ଓ ମୁଦ୍ରଣ କରି,

ସ୍ୱର୍ଗିତା ମିସ୍ ଟମ୍ସନଙ୍କର

**ସ୍ମୃତି ତର୍ପଣ**

ଉଦ୍ଦେଶ୍ୟରେ

ଓଡ଼ିଆ ଖ୍ରୀଷ୍ଟୀୟ ସମାଜର ହସ୍ତରେ ସାଦରେ ଅର୍ପଣ କଲି । ଇତି ।

ବିନୀତା

LILY QUY

Sambalpur, Orissa

# ସୂଚିପତ୍ର

---



---

# ଗଳ୍ପ ମଞ୍ଜରୀ

## ଖିଆଲି ରାଜା

ଥରେ ଜଣେ ରାଜା ଥିଲେ । ଖୁବ୍ ବଡ଼ ରାଜା । ତାଙ୍କର ଅନେକ ଲୋକବାକ, ହାତୀଘୋଡ଼ା, ମାଲ୍‌ପଣ ଥିଲା । ଆଉ ବଡ଼ ବଡ଼ ବଗିଚା ଓ ମସ୍ତବଡ଼ ଘର ଥିଲା । ତାଙ୍କ ପରି ବଡ଼ ରାଜା ଆଉ କେହୁ ନ ଥିଲେ ।

ଏତେ ବଡ଼ ରାଜା ହେଲେ ମଧ୍ୟ ସେ କିନ୍ତୁ ଭଲ ଲୋକ ନ ଥିଲେ । ସେ ପ୍ରଜାମାନଙ୍କ ଉପରେ ଭାରି ଅତ୍ୟାଚାର କରୁଥିଲେ । ଜୋର-ଜୁଲମ୍ କରି ଲୋକମାନଙ୍କର ଜିନିଷ ପତ୍ର ନେଇ ଯାଉଥିଲେ । ବିନା ଦୋଷରେ ଲୋକମାନଙ୍କୁ ଶାସ୍ତି ଦେଉଥିଲେ ଓ ପ୍ରଜାମାନଙ୍କର କୌଣସି ଗୁହାରି ଶୁଣୁ ନ ଥିଲେ ।

ରାଜାଙ୍କର ଆଉ ଗୋଟିଏ ଦୋଷ ଥିଲା । ସେ ଲୋକଙ୍କ ଆଗରେ ନିଜର ମାନ ସମ୍ମାନ, ନିଜର ବଡ଼େଇ ଦେଖେଇବାକୁ ଭଲ ପାଉଥିଲେ । ତେଣୁ ସେ ଅବକୁଅବ ଖୁବ୍ ଦାମୀ ଲୁଗା ପିନ୍ଧି ସୁନ୍ଦର ଘୋଡ଼ାର ଗାଡ଼ି ଚଢ଼ି ସହର ଭିତରେ ବୁଲୁଥିଲେ ।

କେବେ କେବେ ସେ ଶିକାର କରିବାକୁ ଯାଉଥିଲେ । ସେ ଶିକାରକୁ ବାହାରିବା ପୂର୍ବରୁ ଅନେକ ଲୋକ ଓ ସେନା ବଣକୁ ଯାଇ ରାଜାଙ୍କ ନିମନ୍ତେ ଘର, ଖାଇବା ଜିନିଷପତ୍ରର ବନ୍ଦୋବସ୍ତ କରୁଥିଲେ । ତା' ପରେ ରାଜା ହାତୀରେ ଚଢ଼ି

ସେଠାକୁ ଯାଉଥିଲେ । ରାଜାଙ୍କର ଗୋଟାଏ ଅଦ୍ଭୁତ ଖିଆଲ ଥିଲା । ତେଣୁ ଲୋକେ ତାଙ୍କୁ ଖିଆଲି ରାଜା ବୋଲି କହୁଥିଲେ । ରାଜା ପାଗଳମାନଙ୍କୁ ଖୋଜି ତାଙ୍କ ସଙ୍ଗେ ଗପ କରିବାକୁ ଭାରି ଭଲ ପାଉଥିଲେ ।

ଥରେ ସେ ସହରଯାକ ଢେଣ୍ଡୁରା ପିଟାଇ ସମସ୍ତଙ୍କୁ ଜଣାଇଲେ ଯେ, ଯିଏ ସବୁଠୁଁ ବଡ଼ ପାଗଳକୁ ଧରି ଆଣି ପାରିବ, ରାଜା ତାକୁ ବଡ଼ ପୁରସ୍କାର ଦେବେ । ଅସଲ ପାଗଳ ଖୋଜିବାକୁ ଲୋକେ ଏଣେତେଣେ ଧାଇଁଲେ ।

ଦିନେ ଗୋଟାଏ ଲୋକ ପକ୍କା ରାସ୍ତା ଉପରେ ପେଟେଇ ପଡ଼ି, ହାତ ଗୋଡ଼ ଛାଟୁଥିଲା । ତାହା ଦେଖି ରାଜାଙ୍କ ସିପାହୀ ତାକୁ ପଚାରିଲା, "କିରେ, ତୁ କଣ କରୁଛୁ ?"

ଲୋକଟି କହିଲା "ଆରେ ଭାଇ, ଗରମରେ ମରି ଯାଉଛି ; ତୁମ ରାଜ୍ୟରେ ତ ନଈ, ନାଳ, ପୋଖରୀସବୁ ଶୁଖି ଯାଇଛି । କୋଉଠି ମୁନ୍ଦେ ହେଲେ ପାଣି ନାହିଁ । ତେଣୁକରି ଏ ନଈରେ ଟିକେ ପହଁରୁଛି ।"

ସିପାହୀ ଭାବିଲା, "ଏ ତ ମହାନ ପାଗଳ, ଏହାକୁ ରାଜାଙ୍କ ପାଖକୁ ନେଲେ, ନିଶ୍ଚୟ ଭଲ ପୁରସ୍କାର ମିଳିବ ।" ଏହା ଭାବି ସେ ତାକୁ ରାଜାଙ୍କ ନିକଟକୁ ଧରି ନେଲା । ରାଜା ଖୁବ୍ ସୁନ୍ଦର ଦାମୀ ଲୁଗା ପିନ୍ଧି ଦରବାରରେ ବସିଥିଲେ । ମୁଣ୍ଡରେ ମୁକୁଟ, ପାଦରେ ସୁନାଜରିଲଗା ଜୋତା, ହାତରେ ହୀରାର ମୁଦି ।

ରାଜାଙ୍କ ସିପାହୀ ଦରବାରକୁ ଆସି କହିଲା, "ମହାରାଜ, ଖରଙ୍କା ହେଉନ୍ତୁ, ମୁଁ ଗୋଟାଏ ଅସଲ ପାଗଳକୁ ଆଣିଛି । ଏମନ୍ତ ବାୟା ମଣିଷ ଅଉ ଗୋଟାଏ ସଂସାରରେ ନ ଥିବ ।"

ରାଜା କହିଲେ, "କାହିଁ ? ଅଣ ତ, ମୁଁ ଦେଖେଁ ।"

ରାଜାଙ୍କ ଆଗରେ ଠିଆ ହୋଇ ପାଗଳ ଏତେ ହସିଲା ଯେ ରାଜାଙ୍କଠାରୁ ଆରମ୍ଭ କରି ଦରବାରର ଗୋଟାକଯାକ ଲୋକ ତା ସଙ୍ଗେ ସଙ୍ଗେ ହସିବାକୁ ଲାଗିଲେ । ସେ ହସର ଯେମିତି ଆଉ ଶେଷ ନାହିଁ ।

ରାଜା ପାଗଳକୁ କହିଲେ, "ଆରେ ପାଗଳ, ତୁ ଏତେ ହସୁଛୁ କାହିଁକି ?"

ପାଗଳ ଉତ୍ତର ଦେଲା, "ମହାରାଜ, ହୁଁ, ହୁଁ, ତୁମର ଦୁର୍ଦ୍ଦଶା ଦେଖି ହସୁଛି । ଏ ଚୈତ୍ର ମାସ, ଗରମରେ ମଣିଷ ମରି ଯାଉଛି । ହୋ, ହୋ, ଆଉ ତୁମେ ମୁଣ୍ଡରୁ ଗୋଡ଼ଯାଏ ଗୁଡ଼େ ଲୁଗା ପିନ୍ଧିଛ । ହା, ହା, ସେଥିରେ ପୁଣି ମୁଣ୍ଡରେ ଲଦିଛ ଗୁଟେ ଘଣ୍ଟା ଚକଟାଏ ହୁଁ, ହୁଁ । ତୁମେ କଣ ବାୟା ହେଲ କି ?"

ଏତିକି କହି ପାଗଳ ପୁଣି ହୋ, ହୋ ହୋଇ ହସିବାକୁ ଲାଗିଲା । ତାକୁ ହସିବାର ଦେଖି ପୁଣି ସମସ୍ତେ ହୋ, ହୋ ହୋଇ ହସି ଉଠିଲେ । ହସି, ହସି ପେଟ ଦରଜ ।

କିଛି ସମୟ ପରେ ହସ ବନ୍ଦ କରି ରାଜା କହିଲେ, "ହଁ, ଏହି ଏକା ଅସଲ ପାଗଳ ।"

ରାଜା ତାକୁ ପାଖକୁ ଡାକି କହିଲେ, "ପାଗଳ ଶୁଣ, ତତେ ଦେଖି ମୁଁ ବଡ଼ ଖୁସୀ ହେଲି । ତୋ ପରି ପାଗଳ ଗୋଟାଏ ମୁଁ ଲୋଡ଼ୁଥିଲି ।" ସେଇଠୁଁ ରାଜା ତାଙ୍କର ସୁନା ବନ୍ଧା ବାଡ଼ୀଟି ତାକୁ ଦେଇ କହିଲେ, ଦେଖିରେ ପାଗଳ, ତତେ ମୁଁ ମୋର ବାଡ଼ୀଟା ପୁରସ୍କାର ଦେଲି । ହେଲେ ଗୋଟାଏ

କଥା, ଯଦି କେବେ ତୁ ତୋଠୁଁ ଅଧିକ ପାଗଳର ଦେଖା ପାଉ, ତେବେ ଏ ବାଡ଼ୀଟା ତାକୁ ଦେବୁ, ବୁଝିଲୁ ?"

ପାଗଳ କହିଲା, "ହଁ, ବୁଝିଲି, ମୁଁ ଏବେ ଯାଉଛି । ବଡ଼ ଗରମ କରୁଛି କି ନା ? ସେଥିଲାଗି ଯାଉଛି, ଆଉ ଟିକେ ପଢ଼ିବାକୁ ।"

ପାଗଳ ଚାଲିଗଲା । ରାଜାଙ୍କର ଯେଉଁ ସିପାହୀ ପାଗଳକୁ ଆଣିଥିଲା, ସେ ମଧ୍ୟ ଗୋଟିଏ ବଡ଼ ପୁରସ୍କାର ପାଇଲା ।

× × × ×

ଏହି ଘଟଣାର ତିନି ଚାରି ବର୍ଷ ଭିତରେ ଏ ଦେଶର ରାଜା ହଠାତ୍ ରୋଗରେ ପୀଡ଼ିତ ହେଲେ । ଦେଶ ବିଦେଶରୁ ଡାକ୍ତର, ବୈଦ୍ୟ, ହାକିମ, କବିରାଜ ସବୁ ଆସିଲେ । ମାତ୍ର କିଛି ଲାଭ ହେଲା ନାହିଁ । ରାଜା ଯେମିତି କି ସେମିତି । ଅଧିକନ୍ତୁ ଦିନ-ଦିନ ତାଙ୍କ ଅବସ୍ଥା ଖରାପ ହେବାରେ ଲାଗିଲା । ରାଜା ବୋଧହୁଏ ଆଉ ବଞ୍ଚିବେ ନାହିଁ ।

କେତେ ବୈଦ୍ୟ, ଡାକ୍ତର ଆସିଲେ ମାତ୍ର କେହି ତାଙ୍କୁ ଭଲ କରି ପାରିଲେ ନାହିଁ । ଯେଉଁଦିନ ରାଜାଙ୍କ ଅବସ୍ଥା ଅତି ଖରାପ, ସେହିଦିନ ପାଗଳ ସୁନାର ବାଡ଼ୀ ଧରି ଅଟ୍ଟାଳିକାର ଫାଟକ ପାଖେ ଆସି ଠିଆହେଲା ।

ରାଜାଙ୍କ ପୀଡ଼ା କଥା ଶୁଣି, ସେ କହିଲା, "ମୁଁ ରାଜାଙ୍କ ସଙ୍ଗେ ସାକ୍ଷାତ କରିବି ।" କିନ୍ତୁ ଦରୁଆନ୍ ତାକୁ ଭିତରକୁ ଯିବାକୁ ଛାଡ଼ିଲା ନାହିଁ । ତେଣୁ ପାଗଳ ରାଜା ଦେଇଥିବା ସୁନା ବାଡ଼ୀଟି ତାକୁ ଦେଖାଇଲା । ବାଡ଼ୀରେ ରାଜାଙ୍କର ମୋହର ଦେଖି ଦରୁଆନ୍ ସମ୍ମାନ କରି ପାଗଳକୁ ଭିତରକୁ ଛାଡ଼ିଦେଲା ।

ପାଗଳ ସିଧା ଉପର ମହଲକୁ ଚଢ଼ି ଯାଇ ରାଜାଙ୍କ ପାଖରେ ହାଜର ହେଲା । ମନ୍ତ୍ରୀ ଓ ସଭାସଦମାନେ ତାକୁ ଅଟକେଲେ ମାତ୍ର ସେ ବାହାରିଯିବାକୁ ନାରାଜ । ରାଜା ଅନ୍ୟ ପାଖକୁ ମୁହଁ କରି ଶୋଇଥିଲେ । ପାଟି ଶୁଣି ସେ ଅନାଇଲେ ଓ ପାଗଳକୁ ଦେଖି ହାତରେ ଠାରିଲେ । ତହୁଁ ସେମାନେ ତାକୁ ଆଣି ରାଜାଙ୍କ ରୁପା ପଲଙ୍କ ନିକଟରେ ଠିଆ କରେଇଲେ ।

ରାଜା କହିଲେ, 'ବାପୁ ରେ, ମୋ ଯିବା ସମୟରେ ମୋତେ ଦେଖିବାକୁ ଆସିଲୁ ?"

ପାଗଳ ହସି କହିଲା, "ମହାରାଜ ! ତୁମ୍ଭେ କୁଆଡ଼େ ଯାଉଛ ? କେତେଦିନ ପାଇଁ ଯାଉଛ ?"

ରାଜା କହିଲେ, "ମୁଁ କୋଉଠିକି ଯିବି ତା ଜାଣି ନାହିଁ, ମାତ୍ର ଚିରକାଳ ପାଇଁ ଯାଉଛି ।"

ପାଗଳ ପୁଣି ହସିକରି କହିଲା, "ସେ କି କଥା ମହାରାଜ, କେଉଁଆଡ଼େ ଯାଉଛ ଜାଣି ନାହଁ ? ଯାହା ବୟସରେ ଓ ରହିବା ବିଷୟରେ ତ କିଛି ବନ୍ଦୋବସ୍ତ କରିଥିବ ? ତୁମର ସେନା, ଲୋକବାକ, ତମ୍ବୁ, ହାତୀ, ଘୋଡ଼ା ସବୁ ଆଗରେ ପଠାଇ ଦେଇଛ ତ ?"

ରାଜା ଉତ୍ତର କଲେ, "ଦୁର୍ ପାଗଳ, ଏସବୁ ଜିନିଷ କି ସେଠାକୁ ପଠାଯାଏ ?"

ପାଗଳ କହିଲା, "ତା'ହେଲେ ସେ ସବୁ ସଙ୍ଗରେ ନେଇ ଯାଅ ।"

ରାଜା ହସିକରି ଉତ୍ତର ଦେଲେ, "ସଙ୍ଗରେ କିଛି ନେବାର ଉପାୟ ନାହିଁରେ ପାଗଳ, ସେ ସ୍ଥାନକୁ ଏକା ଯିବାକୁ ହୁଏ ।"

ପାଗଳ କହିଲା, "କଅଣ କଅଣ କହୁଛ ମହାରାଜ, ସେଠିକି କିଛି ନେଇ ଯାଇ ପାରିବ ନାହିଁ ? ଏତେ ଧନ-ରତ୍ନ, ଏତେ ବଡ଼ ବଡ଼ ଘର, ଏତେ ଗାଡ଼ୀ ଘୋଡ଼ା ସବୁ ଛାଡ଼ି ଚାଲିଯିବ ? ସଙ୍ଗରେ କିଛି ନେବ ନାହିଁ ?"

ରାଜା ଉତ୍ତର ଦେଲେ "ନାହିଁରେ ପାଗଳ କିଛି ନେଇ ପାରିବ ନାହିଁ । ସବୁ ଛାଡ଼ି ଯିବାକୁ ହେବ । ଯେଉଁ ଜଗତରେ ଥାଇଁ ଥାଇଁ ଈଶ୍ୱରଙ୍କ ପ୍ରତି ମନ ଦେଇଥାନ୍ତି, ଯେଉଁ ଜୀବନରେ କିଛି ଭଲ କାର୍ଯ୍ୟ କରିଥାନ୍ତି, ଯେଉଁ ଧର୍ମ ବାଟରେ ଚାଲି, ଧର୍ମକର୍ମ କରି-ଥାନ୍ତି, ପୁଣି ଅନ୍ୟର ଉପକାର କରିଥାନ୍ତି, ତେବେ ପରକାଳ ଲାଗି କିଛି ସଞ୍ଚୟ କରି ପାରିଥାନ୍ତି । ମାତ୍ର ମୋର ସେ ସମସ୍ତ ଚାଲି-ଯାଇଛି । ଏବେ ଆଉ କିଛି ଉପାୟ ନାହିଁରେ ବାପା, ଆଉ କିଛି ଉପାୟ ନାହିଁ ।

ଯେତେ ଅନ୍ୟାୟ, ଅତ୍ୟାଚାର କରିଛି, ସେ ସବୁର ବୋଝ ବୋହି ଏବେ ମତେ ସେ ଅଜଣା ରାଜ୍ୟକୁ ଯିବାକୁ ହେବ ।"

ପାଗଳ ରାଜାଙ୍କର ଅତି ନିକଟକୁ ଘୁଞ୍ଚି ଆସିଲା । ଓ ସୁନା-ବନ୍ଧା ବାଡ଼ିଟା ରାଜାଙ୍କୁ ଦେଖାଇ କହିଲା ।

"ମହାରାଜ ! ଏହି ବାଡ଼ିଟା ଦେବା ସମୟରେ ମୋତେ କହିଥିଲ ପରା, କୌଣସିଦିନ ଯେଉଁ ମୁଁ ମୋଠୁଁ ବଡ଼ ପାଗଳର ଦେଖା ପାଏଁ, ତେବେ ଏ ବାଡ଼ିଟା ତାକୁ ଦେବି ବୋଲି ? ମନେ ଅଛି ?"

ରାଜା ଉତ୍ତର କଲେ, "ହଁ, ମନେ ଅଛି ।"

ପାଗଳ କହିଲା, "ମହାରାଜ ! ଆଜି ମୁଁ ବାସ୍ତବିକ ଗୋଟାଏ ବଡ଼ ବଡ଼ ପାଗଳର ଦେଖା ପାଇଲି । ଚିରକାଳ ପାଇଁ ଯାଉଛ,

ଅଥଚ କୌଟିଲ୍ୟ ଯାଉଛ ଜାଣି ନାହଁ, ଯାହାର କଣ୍ଠ ଅଦ୍ୟାବଧି ମଧ୍ୟ ଭରି ନାହିଁ । ତୁମଠୁଁ ବଡ଼ ପାଗଳ ଆଉ କିଏ ଅଛି ? ସୁତରାଂ ଏହି ବାଡ଼ୀଟା ମୁଁ ତୁମକୁ ଦେଇ ଯାଉଛି ।”

ଏହା କହି ପାଗଳ ରାଜାଙ୍କ ଘରୁ ବାହାରି ଚାଲିଗଲେ ।

---

## ସାତ ଗାଁର ଲୋକ

ଅନେକ ଦିନର କଥା—ଥରେ ଖରା ଛୁଟିରେ ଯଶୋର ଜିଲ୍ଲାର ମାଗୁରା ସହରକୁ ବୁଲି ଯାଇଥିଲି । କାଳିଗଙ୍ଗା ଉପରେ ସୁନ୍ଦର ସହରଟିଏ । ସ୍କୁଲ୍, କଚେରୀ ଓ ସରକାରୀ ଡାକ୍ତରଖାନା ଅଛି । ସହରରେ ଯାହା ଥିବା ଦରକାର, ସବୁ ଅଛି । ଫୌଜଦାରୀ କଚେରୀ ଆଗରେ ସୁନ୍ଦର ସିଧା ରାସ୍ତା । ଏପରି ସୁନ୍ଦର ରାସ୍ତା ଖୁବ୍ କମ୍ ଦେଖିବାକୁ ମିଳେ । ଦୁଇ ପାଖରେ ଦେବଦାରୁ ଗଛ ଲଗାଯାଇଥିବାରୁ ରାସ୍ତାଟା ଅଧିକ ସୁନ୍ଦର ଦିଶୁଛି ।

ଦିନେ ଦ୍ୱ'ପହର ବେଳେ ସେହି ରାସ୍ତାରେ ବୁଲିବାକୁ ବାହାରିଲି । ବାଟରେ ଚାଲିବା ସମୟରେ ଦୂରରୁ ଗ୍ରାମ ଦେଖା-ଯାଏ । ଦୁଇ ମାଇଲ ବାଟ ଚାଲିଲା ପରେ ଗ୍ରାମକୁ ଯିବାର ବାଟ ଧରିଲି । ଦୁଇ ତିନୋଟା ଗ୍ରାମ ପାର ହୋଇ, ଗୋଟିଏ ସାନ ଗ୍ରାମରେ ଆସି ପହଞ୍ଚିଲି ।

ଜଣେ ଲୋକ ପୋଟଳ କ୍ଷେତରେ କାମ କରୁଥିଲା । ତାଠୁଁ ଶୁଣିଲି ଯେ ଏହି ଛୋଟ ଗ୍ରାମର ନାମ ହରିପୁର । ଲୋକଟିକୁ

ପଚାରିଲି, "ଭାଇ, ଏ ଗ୍ରାମରେ କେତେ ଘର ଲୋକ ବାସ କରନ୍ତି ?"

ସେ ଉତ୍ତର ଦେଲା, "ପୋଢ଼ାଏ ପଚାଶ ଘର ହେବ ।"

ମୁଁ ପଚାରିଲି, "ଗ୍ରାମର ଗଉନ୍ତିଆ କିଏ ?"

ଲୋକଟି ମୋ ଅଡ଼କୁ ଅନାଇ ଦୁଃଖର ସହିତ କହିଲା, "ବାବୁ, ଏବେ ଆମ ଗାଆଁରେ ଗଉନ୍ତିଆ କେହି ନାହିଁ କହିଲେ ଚଳେ ।"

ମୁଁ କହିଲି, "କାହିଁକି ?"

ସେ କହିଲା, "ସେ କଥା କଅଣ, ଶୁଣିବେ ଆଜ୍ଞା ? ଆଗରେ ଆମର ଏ ଗାଁ ଏ ମହକୁମା ମଧ୍ୟରେ ବଡ଼ ଗାଁ ଥିଲା । ସେତେବେଳେ ଗାଁର ନେତା ଥିଲେ ଅକ୍ଷୟ ଗଉନ୍ତିଆ । ଏବେ ସେ ବୁଢ଼ା । ତାର ଧନ ସମ୍ପତ୍ତି କିଛି ନାହିଁ । ଋଣ ହେତୁ ସବୁ ସରିଛି ବାବୁ । ତା ମୁଣ୍ଡ ମଧ୍ୟ ଟିକିଏ ଖରାପ ହୋଇ-ଯାଇଛି ।"

ସେତେବେଳକୁ ସଞ୍ଜ ହୋଇ ଆସିଲାଣି । ତଥାପି ଅକ୍ଷୟ ଗଉନ୍ତିଆ ସଙ୍ଗେ ଥରେ ଦେଖା କରିବାକୁ ମୋର ଭାରି ଇଚ୍ଛା ହେଲା । ତା ଘର କେଉଁ ଦିଗରେ ଅଛି ପଚାରି ପଚାରି ଯାଇ ସେଠିକି ଗଲି ।

ଦେଖିଲି ଯେ ଟିଏ ପୁରୁଣା ଭଙ୍ଗା ଚାଳଘର, କେତେ ଖଣ୍ଡ ବାଉଁଶ ଖୁଣ୍ଟ ଚାଳଟିକୁ ଧରି ରଖିଛି । ଘର ଚାରିପାଖରେ ବାଡ଼ ନାହିଁ, ଯାହାକିଛି ଅଛି ସେ ମଧ୍ୟ ଭଙ୍ଗା । ସେହି ଘରର ବାରଣ୍ଡାରେ

ଜଣେ ୬୦ । ୬୫ ବର୍ଷର ବୁଢ଼ା ବସି ହୁକା ପିଉଛନ୍ତି । ଜାଣିଲି ଏ ଅକ୍ଷୟ ଗଜେନ୍ଦ୍ରଅର ଘର ।

ଘର ସମ୍ନାରେ, ବେଢରେ ଡେଙ୍ଗୁରଅ ପିଣ୍ଡ ପାନ ପିଲାଟିଏ ଖେଳୁଥାଏ । ବୁଝି ପାରିଲି, ସେଇ ପିଲାଟି ଅକ୍ଷୟ ଗଜେନ୍ଦ୍ରଅର ନାତି ।

ମତେ ଦେଖିଲାକ୍ଷଣି ଅକ୍ଷୟ ଶୀଘ୍ର ଉଠି ଆସି କହିଲା, “ବାବୁ ସନ୍ଧ୍ୟା ସମୟରେ ଏ ବାଟେ କୁଆଡ଼େ ଆସିଲେ ?”

ମୁଁ କହିଲି, “ଅକ୍ଷୟ ଗଜେନ୍ଦ୍ରଅ ସଙ୍ଗେ ଦେଖା କରିବାକୁ ଆସିଲି ।”

ତାହା ଶୁଣି ଅକ୍ଷୟର ମୁହଁ ବଦଳିଗଲା । ଆଖି ଦୁଇଟା ସଙ୍ଗରେ ଜଳ ଉଠିଲା । ସେ ନିତାନ୍ତ ବିନୟ ସହିତ କହିଲା, “ଆସନ୍ତୁ, ଆସନ୍ତୁ, ଆସନ୍ତୁ । ଅରେ, ଭଜ, ଶୀଘ୍ର ପିଢ଼ା ଖଣ୍ଡେ ଆଣ ତ । ସହରରୁ ବାବୁ ଆସିଛନ୍ତି ମୋ ସଙ୍ଗେ ଦେଖା କରିବାକୁ ।”

“ଥାଉ ଥାଉ” କହି, ମୁଁ ବରଣ୍ଡାରେ ବସି ପଡ଼ିଲି ।

ପରେ ଏପଦ ସେପଦ ସୁଖ-ଦୁଃଖର କଥା କହିଲା ଉତ୍ତାରେ ମୁଁ ପଚାରିଲି “ଅଚ୍ଛା, ଅକ୍ଷୟ, ତୁମର ଅବସ୍ଥା ଆଗେ ତ ଖୁବ୍ ଭଲ ଥିଲା ବୋଲି ଶୁଣିଲି । ଏବେ କାହିଁକି ଏପରି ହେଲା ?”

ଅକ୍ଷୟ କହିଲା, “ସେ କଥା ଆଉ କଅଣ କହିବ ବାବୁ ? ସବୁ କପାଳ ଦୋଷ ।”

କିନ୍ତୁ ସେଥିରେ ମୁଁ ସନ୍ତୁଷ୍ଟ ହୋଇ ପାରିଲି ନାହିଁ । ସବୁ କଥା ଜାଣିବା ପାଇଁ ମୋର ବଡ଼ ଇଚ୍ଛା ହେଲା । ତେଣୁ କହିଲି, “ତୁମେ ଆଗେ ଖୁବ୍ ଧନୀ ଲୋକ ଥିଲ ନା ?”

ଅକ୍ଷୟ, ଦୀର୍ଘ ନିଶ୍ୱାସଟାଏ ଛାଡ଼ି କହିଲା, "ଏହି ଗାଁର ଅଧା ମୋର ନିଜର ଥିଲା । ପ୍ରାୟ ଶଏ ମାଣ ଜମି ଥିଲା । ସବର ଘର ପାଖରେ ବାଡ଼ ବଧ ଯାଉଥିଲା । ତୁଇଟା ବଡ଼ ବଡ଼ ଚୁଲ ଘର ଓ ତୁଇଟା ପକ୍କା ଘର ଥିଲା । ଯେତେବେଳେ ମୋର ବଡ଼ ପୁଅକୁ ବାହା ଦେଲି......ଓଃ !......ସେ କି ଧୁମ୍‌ଧାମ୍ ! ସେତେବେଳେ ମୋର ଘରେ ସାତ ଗାଁଅର ଲୋକ ଅସି ଖାଇଥିଲେ । ମାଛ, ମାଂସ, ଘିଅ କେବଳ ନୁହେଁ ; ଦହି, ଛେନା ପର୍ଯ୍ୟନ୍ତ ।

ଏହି ଅରପାଖ ଗାଁର ଗଉଁତଙ୍କୁ ପଚାରନ୍ତୁ—ସେମାନେ କେତେ ହାଣ୍ଡି ଦହି ଭାରରେ ମୋ ଘରକୁ ବୋହି ଅଣିଥିଲେ । ସାମାନ୍ୟ କଥା ନୁହେଁ, ବାବୁ, ସାତ ଗାଁଅର ଲୋକ । ଏବେ ମଧ୍ୟ ନିମନ୍ତ୍ରଣର କଥା ପଡ଼ିଲେ, ଲୋକେ କହନ୍ତି,—ଓଃ ! ସେମିତି ଭୋଜି ଆଉ କାହିଁ ମିଳିବ, ଅକ୍ଷୟ ଗଉନ୍ତିଆ ଯେମିତି ଖାଇବାକୁ ଦେଇଥିଲେ ?

ସାତ ଗାଁଅର ଲୋକ ମୋ ଘରେ ପଙ୍କ୍ତି ପକାଇଥିଲେ ବାବୁ, ସାତ ଗାଁଅର ଲୋକ । ସେ କଣ, କମ୍ କଥା ?"

ଅକ୍ଷୟ ଏତେ ଗର୍ବସହ କଥାସବୁ କହୁଥିବାର ଦେଖି ମୁଁ ବଡ଼ ଆଶ୍ଚର୍ଯ୍ୟ ହେଲି । ଅକ୍ଷୟର ନାତି ମଧ୍ୟ ଆଶ୍ଚର୍ଯ୍ୟ ହୋଇ ସାନ୍ତ-ବାପା ଅଡ଼କୁ ଅନାଇ ରହିଲା । ଏତେଗୁଡ଼ା କହି ବୁଢ଼ା ଥକି ଗଲା ଓ ଧୀରେ ଧୀରେ ହୁକା ଟାଣିବାକୁ ଲାଗିଲା ।

ମୁଁ ପଚାରିଲି, "ଅକ୍ଷୟ, ଏ କେତେ ଦିନର କଥା ହେଲଣି ?"

ବୁଢ଼ା କହିଲା, "ଏଇ ସାତ, ଅଠ ବର୍ଷର କଥା, ବାବୁ !"

'ତୁମର ଏପରି ଅବସ୍ଥା କେବେଠୁଁ ହେଲା, ଅକ୍ଷୟ ?"

"ଆଜ୍ଞା, ସେହି ବିବାହ ପରଠୁଁ ବୋଲି କହୁଲେ ଚଳେ । ତିନି ବର୍ଷ ଭିତ୍ତରେ ଗାଁରେ ହଇଜା ଲାଗିଲା, ସେଥିରେ ମୋର ସ୍ତ୍ରୀ ଓ ସାନ ପୁଅ ଗ୍ଲିଗଲେ । ବାବୁ, ଦୁଃଖର କଥା କଅଣ ଅଉ କହିବ—ନାତୁଣୀଟିକୁ ହଇଜା ଧରିବାବେଳେ ମାଗୁଣିର ଅବିନାଶ ଡାକ୍ତରଙ୍କୁ ଷୋଳ ଟଙ୍କା ଫିସ୍ ଦେଇ ଆଣିଲି, ମାତ୍ର ଡାକ୍ତର ବାବୁ ଆସିବା ପୂର୍ବରୁ........" କହୁଁ କହୁଁ ବୁଢ଼ା କାନ୍ଦି ପକାଇଲା ।

ଏହି ସମୟରେ ମଇଳା, ଛିଣ୍ଡା ଲୁଗା ପିନ୍ଧିଥିବା ଏକ ସ୍ତ୍ରୀ ଲୋକ ଘରୁ ବାହାରି ଅଉ ପାଖର ଗ୍ଲଳିଆକୁ ଗଲା । ବୁଝିଲି ଯେ ତାହା ସେମାନଙ୍କର ରନ୍ଧାଘର ଓ ସ୍ତ୍ରୀଟି ଅକ୍ଷୟର ବଡ଼ ବୋହୂ ।

ମୁଁ କହିଲି, "ଅକ୍ଷୟ, ଯାହା ହେବାର ତ ହୋଇଯାଇଛି, ତା ଭାବି ଦୁଃଖ କଲେ କଅଣ ହେବ ? କିନ୍ତୁ ତୁମର ଅବସ୍ଥା ଏତେ ଖରାପ କାହିଁକି ହେଲା, ତାହା କହିଲ ନାହିଁ ।

"ସେକଥା ତ କହୁଛି ଆଜ୍ଞା । ଯେଉଁ ବର୍ଷ ମୋର ବଡ଼ ପୁଅର ବିବାହ ଦେଲି, ସେହି ବର୍ଷ ଏ ବିବାହ ଲାଗି ପ୍ରସନ୍ନ ମହାଜନ କତିରେ ଭରଣେ ମାଣ ଜମି ବନ୍ଧା ଦେଇ ଅଢ଼େଇଶ ଟଙ୍କା କରଜ କଲି । ମାସରେ ଟଙ୍କା ମୁଣ୍ଡରେ ଦୁଇ ପଇସା ସୁଧ । ଛ ମାସ ପର୍ଯ୍ୟନ୍ତ ନିୟମିତ ଭାବରେ ସୁଧ ଦେଲି । ତା'ପରେ ବର୍ଷା ନ ହେବାରୁ ଗ୍ଲଷବାସ ସବୁ ନଷ୍ଟ ହେଲା । ସୁଧଯାକ ବାକି ରହିଲା ଓ ଅସଲ ସୁଧ ମିଶି ବଢିବାକୁ ଲାଗିଲା । ତା'ପରେ ଅଉ କଅଣ କହିବ ବାବୁ ? ଅଳ୍ପେ ଅଳ୍ପେ ସବୁ ଗଲା । ବାକି ଯାହା ଏହି ଉହ ଖଣ୍ଡ ଅଛି । ତା ମଧ୍ୟ ରହି ନ ଥାନ୍ତା ବାବୁ, ଗାଁର

ଲୋକେ ମଧ୍ୟସ୍ଥ ହେବାରୁ ବାସ ଗଣ୍ଡିକ ବହୁଲ । ତଥାପି ଲୋକ-ମାନେ ମତେ ମାନନ୍ତି ବାବୁ । ଏବେ ମଧ୍ୟ ସେମାନେ କହନ୍ତି "ହଁ ଅକ୍ଷୟ ଗଜକଶ୍ରୀଅ, ଯେ ପୁଅ ବିବାହରେ ଭୋଜ୍ୟାଟାଏ ଦେଇ-ଥିଲେ । ସାତ ଗାଁଅର ଲୋକ ଖାଇଥିଲେ, ବାବୁ ।"

ମୁଁ କହିଲି, "ଅଚ୍ଛା, ଅକ୍ଷୟ, ହାତରେ ଯେବେ ଟଙ୍କା ନ ଥିଲା, ଧାର କରଜ କରି ପୁଅର ବିବାହରେ ଏତେ ଅଡ଼ମ୍ବର କାହିଁକି କଲ ?

ଅକ୍ଷୟ କହିଲା, "ଅପଣ କଣ କହୁଛନ୍ତି ବାବୁ ? ମୋର ତ ପୁଣି ମାନ-ମହତ ଅଛି । ଗାଁଅର ପ୍ରଧାନ ଲୋକ ମୁଁ କଣ ଏମିତି ସେମିତି ମୋ ପୁଅର ବିବାହ ଦେଇଥାନ୍ତି ? ଏ ସବୁକଥା ଅପଣ କାହୁଁ ବୁଝିବେ ? ବାବାରେ । କି ଜାକ୍‌ଜମକରେ ବିବାହ ଦେଲି । ସେ ଦିନ ଯଦି ଅସିଥାନ୍ତେ ତେବେ ସିନା ଦେଖି ପାରନ୍ତେଥାନ୍ତେ । ଯାତ୍ରା—ଗୀତ ଦୁଇ ରାତ ହୋଇଥିଲା. ଅଜ ସାତ ଗାଁଅର ଲୋକ ପତର ପକେଇ ଖାଇଥିଲେ ।......" ଅକ୍ଷୟର ନାତି ଟିକି ସେହି ସମୟରେ ଖେଳ ସ୍ଥଳ ଅସି ପାଖରେ ଠିଆ ହୋଇ କହିଲା, "ହୁଁ" ।

ବୁଝିଲି, ଅକ୍ଷୟ ସଙ୍ଗେ ତର୍କ କରିବା ବୃଥା । ଅକ୍ଷୟକୁ ଓ ତାର ନାତିକୁ ଦେଖି ମୋ ମନରେ ଦୟା ଜାତ ହେଲା । ତେଣୁ ଅକ୍ଷୟ ହାତରେ ପାଞ୍ଚ ଟଙ୍କା ଦେଇ କହିଲି. "ଗଜକଶ୍ରୀଅ, ମୁଁ ବିଦାୟ ନେଉଛି । ଏଥିରେ ନାତିକୁ ମିଠାଇ କିଣି ଦେବ, କିଛି ମନେ କରିବ ନାହିଁ ।" ଅକ୍ଷୟ ଜଟି ମୋର ଦୁଇ ହାତ ରୁପି ଧରିଲା ; ତା' ଅଖିରେ ଲୁହ ।

× × × ×

ଅନେକ ବର୍ଷ ହେଲଣି· ଅଜ ମାଗୁଣିକୁ ଯାଇ ନାହିଁ । ଅଷ୍ଟମ୍ବ ଜୀବିତ କି ମୃତ ଜାଣେ ନାହିଁ. କିନ୍ତୁ ଅଜି ସୁଦ୍ଧା ରାତିରେ ଶୋଇବାକୁ ଯିବା ସମୟରେ ନିଦ ନ ଅସିବାଯାଏ ଅଷ୍ଟମ୍ବର କଥା ମନେ ପଡ଼େ । ହାୟରେ ! ଅଜି ହରିପୁରର ଅଷ୍ଟମ୍ବ ଗଜନ୍ତ୍ରୀ ପରି ଶହ ଶହ ବ୍ୟକ୍ତି, ବୃଥା ଗର୍ବ, ମିଥ୍ୟା, ଅହଙ୍କାର ହେତୁ ସର୍ବସ୍ୱ ହରାଇ ବସିଛନ୍ତି । ପୁଅ, ଝିଅର ବିବାହରେ, ବାପ-ମାଆ ଶ୍ରାଦ୍ଧରେ ଓ ପୂଜା ପର୍ବ ଉତ୍ସବରେ ଋଣ କରଜ କରିବା ହେତୁ ବାଟର ଭିକାରୀ ହୋଇଛନ୍ତି । କେତେ ପୁଣି ନିଜର ଜିଦ୍ ସଜାଣେ ମାମଲା ମକଦ୍ଦମା କରି ସବୁ ହରାଇ ଏକାନ୍ତ ନିଃସମ୍ବଳ ହୋଇ ପଡ଼ିଛନ୍ତି ।

ଯେଉଁ ପୁଅର ବିବାହରେ ଅଷ୍ଟମ୍ବ ଗଜନ୍ତ୍ରୀ ସାତ ଗାଁଅର ଲୋକଙ୍କୁ ଖୁଆଇଥିଲା· ଅଜି ସେହି ପୁଅ ଓ ତା ସ୍ତ୍ରୀ ପିଲା ଦୁଇ ଓଳି ପେଟପୁରା ଖାଇବାକୁ ସୁଦ୍ଧା ପାଉ ନାହାନ୍ତି । କି ଦୁର୍ଦ୍ଦଶା ଅମ ହେଣର ! ତଥାପି ବୁଢ଼ା ଅଷ୍ଟମ୍ବର ବର୍ତ୍ତମାନ ସୁଦ୍ଧା କି ମିଥ୍ୟା ଗର୍ବ । "ସାତ ଗାଁଅର ଲୋକ ଖାଇଥିଲେ ବାବୁ, ସାତ ଗାଁଅର ଲୋକ ।" ଏ କଥା କହିଲା ବେଳକୁ ତା ଅଖି ଦ'ଟା କି ଉଜ୍ଜ୍ୱଳ ଦେଖାଯାଉଥାଏ ।

---

# ମେନାଉ ଓଶଖ୍‌ର ସର୍ବନାଶ

(ସତ୍ୟ ଘଟଣା)

ସେଦିନ ଯାଦବପୁରର ହାଟ ପାଳି । ହାଟରେ ଲୋକ ଭିଡ଼ । କିଏ ବଜାରକୁ ଅସୁଛି, କିଏ ଫେରି ଯାଉଛି । ହଠାତ୍

ଯାଦବପୁରର ଜଙ୍ଗଲ ଉପରୁ ନିଆଁର ଶିଖା ଦେଖାଗଲା । ନିଆଁ ଲିଭାଇବାକୁ ସମସ୍ତେ ଧାଇଁଲେ । ମେନାଇ ଶେଖ୍ ମଧ୍ୟ ଦୌଡ଼ିଲା । କାରଣ ତାର ଗ୍ରାମରୁ ନିଆଁ ଉଠୁଥିଲା ।

ମେନାଇ ଦେଖିଲା ଯେ ତାର ଘରେ ନିଆଁ ଲାଗିଛି । ତା ସ୍ତ୍ରୀ ଚୁଲି ଲଗାଇ ବାହାରକୁ ଯାଇଥିଲା, ଚୁଲିରୁ ନିଆଁ ଉଠି-ଗଲା । ପବନରେ ସେହି ନିଆଁ ଚୁଲିଆଡ଼େ ମାଡ଼ିଗଲା । ଲିଭାଇବା ଅସମ୍ଭବ ହେଲା ।

ତାର ପରଦିନ ମହକୁମାର ହାକିମ ସସ୍ତରେ ମେନାଇର ଘର ଦେଖିବାକୁ ଗଲେ । ଦେଖିଲେ ମେନାଇର ଘର ଦ୍ୱାର ସବୁ ପୋଡ଼ି ଛାରଖାର ହୋଇଛି । ତାର ଦୁଆର ଆଗରେ ଯେଉଁ ବଡ଼ ଧାନ ଗୋଲାଟି ଥିଲା ତାହା ପୋଡ଼ିଯାଇ କଳା ପାଉଁଶରେ ପରିଣତ ହୋଇଛି । ମେନାଇ ଶେଖ୍‌ର ଦଶା ଅତି ଶୋଚନୀୟ ।

ମେନାଇ ଶେଖ୍‌ର ଅବସ୍ଥା ନିତାନ୍ତ ମନ୍ଦ ନ ଥିଲା । ମାତ୍ର ଏବେ ତାର ସବୁ ଯାଇଛି । ଘରଦ୍ୱାର, ଧାନ ଚାଉଳ ତ ସବୁ ଗଲା ; ତା ଛଡ଼ା ତାର ବହୁଦିନ ସଞ୍ଚିତ ନୋଟ୍ ବଣ୍ଡାଏ ମଧ୍ୟ ପୋଡ଼ି-ଗଲା । ଯେତେ ଟଙ୍କା ରଖିଥିଲା ସବୁ ପୋଡ଼ିଯାଇ ଗୋଟିଏ ମୁଣ୍ଡା ହୋଇଗଲା ।

ଆଖିର ଲହ ପୋଛୁଁ ପୋଛୁଁ ମେନାଇ ଶେଖ୍ ହାକିମ-ସାହେବଙ୍କୁ କହିଲା, "ହଜୁର, ମୋର ସବୁ ଗଲା । କେତେ କଷ୍ଟ କରି ସାରା ଜୀବନ ମୂଲିଆ ଖଟି ଛୁଣ୍ଡରେ ପକାଇ ସାତ ଶ' ଅଶୀ ଟଙ୍କା ଜମାଇ ରଖିଥିଲି ତାକୁ ଧାନ ଗୋଲା ଭିତରେ ଲୁଚାଇ ରଖିଥିଲି । ଆଜି ମୁଁ ପଥର ଭିକାରୀ । ଆପଣ ଦେଖନ୍ତୁ—"

ଏହା କହି ମେନାଜ୍ ଜଳା ଜଳା ଅଶୀଟା ଟଙ୍କା ବାହାର କଲା । ତାଙ୍କ ସାତ ଶ ଏକ ଟଙ୍କିଆ, ପାଞ୍ଚ ଟଙ୍କିଆ ଦଶ ଟଙ୍କିଆ ନୋଟ୍‌ସବୁ ଥିଲା । ସେହି ନୋଟସବୁର ପତ୍ତା ମିଳଲା ନାହିଁ; କେବଳ ଯେଉଁ ଟିନ୍‌ରେ ସେ ନୋଟ୍‌ସବୁ ରଖିଥିଲା, ସେହି ପୋଡ଼ା ଟିନ୍‌ଟା ରହିଛି ।

ମେନାଜର କି କାନ୍ଦ । ହାକିମ ସାହେବ ତାକୁ ସାନ୍ତ୍ୱନା ଦେଲେ । ସ୍ଥାନୀୟ ପ୍ରେସିଡେଣ୍ଟ ସାହେବ ମଧ୍ୟ ପାଖରେ ଥିଲେ । ସେ କହିଲେ, "ହଜୁର୍, ବାସ୍ତବକ୍ ମେନାଜର ସର୍ବନାଶ ହୋଇଛି । କିନ୍ତୁ ତାହା କପାଳ କଥା କୁହେଁ, ମେନାଜର ନିଜର ମୂର୍ଖାମି । ଅଧ ମାଇଲ୍ ଦୂରରେ ଯାଦବପୁରର ପୋଷ୍ଟ ଅଫିସ୍ ଓ ସେଭିଂସ୍ ବ୍ୟାଙ୍କ୍ ଅଛି । ଆପଣ ସେଦିନ କହୁଥିଲେ, ଗୃହିମାନେ ଧାନ ସ୍କୁଲରେ ବେଶ୍ ରୋଜଗାର କରୁଛନ୍ତି, ତା ଦ୍ୱାରା ସେମାନଙ୍କ ହାତରେ ଦୁଇ ପଇସା ରହୁଛି । ଅଜକାଲି ଗ୍ରୀଭ-ମାନେ ବେଶୀ ଅତ୍ୟାଗ୍ରହ କରୁଛନ୍ତି । ଏଣୁ ଟଙ୍କା ଘରେ ନ ରଖି ପୋଷ୍ଟ ଅଫିସ୍ ସେଭିଂସ୍ ବ୍ୟାଙ୍କରେ ରଖିବାକୁ ଆପଣ ପରାମର୍ଶ ଦେଇଥିଲେ । ମେନାଜ୍ ଯଦି ତାହା କରିଥାନ୍ତା, ତେବେ ଆଜି ତାର ଏ ଦୁର୍ଦ୍ଦଶା ହୋଇ ନ ଥାନ୍ତା ।"

ହାକିମ ସାହେବ କହିଲେ, "ତାହା ସତ୍ୟ । କିନ୍ତୁ ଆଜି ଏ କଥା ମେନାଜ୍ ଶେଖିକୁ କହି କିଛି ଲାଭ ନାହିଁ । ବେଶ୍ଯ ଆଜି ଫକିର, ଟଙ୍କା ଘରେ ନ ରଖି ପୋଷ୍ଟ ଅଫିସରେ ରଖିଥିଲେ, ମେନାଜର କିଛି ଭାବନା ନ ଥାନ୍ତା, ଅଭାବ ବେଳେ କାଢ଼ିନେଇ ପାରିଥାନ୍ତା ।"

ସହାନୁଭୂତିପୂର୍ଣ୍ଣ ସ୍ୱରରେ ହାକିମ ସାହେବ କହିଲେ, "ମେନାଜ୍, କାନ୍ଦିଲେ ଆଉ କଣ ହେବ ? ଯା ହେବାର ହୋଇ

ଯାଉଛନ୍ତି । ପୋଡ଼ା ଟଙ୍କାସବୁ କଲିକତାର ଟାଙ୍କ୍ ଶାଳକୁ ପଠାଇଲେ କିଛି ପାଇବ । ତୁମେ ଦରଖାସ୍ତ କର, ମୁଁ ସୁପାରିଶ କରି ଦେବି । ନୋଟ୍‌ସବୁ ତ ପାଉଁଶ ହୋଇଛି, ତା ପାଇଁ କିଛି ଉପାୟ ନାହିଁ ।

---

# କପାଳ କଥା

ଗଦାଧର ପ୍ରାମାଣିକ ନିଜ ଜାତିର ବ୍ୟବସାୟ କରି କୌଣସି ପ୍ରକାରେ ନିଜ ସଂସାରଟିକୁ ଚଳାଏ । ଘରେ ସ୍ତ୍ରୀଟି ପୁଅ ଝିଅ । ସେ ସକାଳେ କାର୍ଯ୍ୟକୁ ଯାଏ, ଦୁଇଟା ବେଳେ ଫେରେ । କାହା ସଙ୍ଗେ ବେଶୀ କଥା କହେ ନାହିଁ—ସେ ଟିକେ ଗମ୍ଭୀର ପ୍ରକୃତିର ଲୋକ ।

ଯେଉଁଦିନ ସେ ବେଶୀ ପଇସା ପାଏ, ସେହି ଦିନ ଘରକୁ ଆସି ସ୍ତ୍ରୀକୁ କହେ, "ଆଜି ବହୁତ ଖଟିଛି ଓ ପ୍ରାୟ ଅଠ ଗଣ୍ଡା ପଇସା ରୋଜଗାର କରିଛି । ଦିଅ, ଦିଅ, ତେଲ ଦିଅ, ମୁଁ ଗାଧୋଇ ଯାଏ ।"

ଯେଉଁଦିନ ଅଳ୍ପ ପଇସା ପାଏ, ସେଦିନ ଆସି କହେ— "ଆଜି କପାଳ ଖରାପ୍, ତେଣୁ ଦଶଟା ପଇସାରୁ ବେଶୀ ହେଲା ନାହିଁ ।"

ସଂସାରରେ ମନୁଷ୍ୟକୁ ସୁଖ ଦୁଃଖ ଉଭୟ ଭୋଗ କରିବାକୁ ହୁଏ । ସୁଖ ଯେତେବେଳେ ଆସେ ସେତେବେଳେ ଗଦାଧର କପାଳର ଗୁଣ ଗାଏ ନାହିଁ । କିନ୍ତୁ ଦୁଃଖ ଯେତେବେଳେ ଆସେ ସେତେବେଳେ ସେ ଏହି କପାଳ ଉପରେ

ସବୁ ଦୋଷ ମାଡ଼ ଢଏ । ଏହିପରି ଭାବରେ ତା ଦିନ କାଟୁଥାଏ ।

ଗ୍ରାମରେ ଜଣେ କମାର ବାସ କରେ, ତା ନାମ ଅଭୟ । ଭାରି ପିଅଣା ଲୋକଟା । ଲେଖା ପଢ଼ା କିଛି ଜାଣେ, ଅବସ୍ଥା ମଧ୍ୟ ସ୍ୱଚ୍ଛଳ । ଗଦାଧରକୁ ଦେଖିଲେ, ଅଭୟ ପଚାରେ—"ହେ ପ୍ରମାଣିକେ, ଆଜିକାଲି ତୁମ କପାଳ କେମିତି ?

ଗଦାଧର ଟିକିଏ ବିରକ୍ତ ହୋଇ କହେ,—"ଚିରକାଳ ଯେମିତି, ଆଜି ସେମିତି । ପୋଡ଼ା କପାଳରେ ପୁଣି ଭଲ ମନ୍ଦ କଅଣ ?"

ଥରେ ଗ୍ରାମରେ ହଇଜା ଲାଗିଲା । ବହୁତ ଲୋକ ମରି-ଗଲେ । କେତେ ଠାକୁର ଠାକୁରାଣୀଙ୍କ ପୂଜା ଦିଆ ହେଲା । ଗଦାଧରର ବଡ଼ ପୁଅକୁ ହଇଜା ଲାଗିଲା । ପାହାନ୍ତାରୁ ରୋଗ ଆରମ୍ଭ ! ଗଦାଧର ଗ୍ରାମର ଡାକ୍ତର ପାଖକୁ ଦୌଡ଼ିଲା । ସେ ଅଭୟ କମାରର ଦୋକାନ ବାଟ ଦେଇ ଗଲା । ଅଭୟ ଭୋରରୁ ଉଠି ଶାଳରେ ନିଆଁ ଜଳାଉଥିଲା । ଗଦାକୁ ସେ ବାଟ ଦେଇ ତରବରରେ ଯିବାର ଦେଖି ଅଭୟ ପଚାରିଲା, "ଏତେ ସକାଳୁ କୁଆଡ଼େ ଦୌଡ଼ୁଛ, ପରମାଣିକେ ?"

ଗଦା ସବୁ କଥା କହିଗଲା । ଅଭୟ କହିଲା, "ଚାଲ ମୁଁ ତୁମ ସଙ୍ଗରେ ଯିବି ।"

ବାଟରେ ଯାଉଁ ଯାଉଁ ଗଦା କହିଲା, "ଭାଇ, ମୋ କପାଳ ବଡ଼ ମନ୍ଦ ।"

ଅଭୟ ଟିକେ ରାଗିଯାଇ କହିଲା, "ଯଦି ସବୁ କପାଳ କଥା, ତେବେ ଡାକ୍ତର ଘରକୁ କାହିଁକି ଦୌଡ଼ୁଛ ? କପାଳରେ

ଥିଲେ, ତୁମ ପୁଅ ବଞ୍ଚିବ, କେହି ତାକୁ ମାରି ପାରିବେ ନାହିଁ । ଆଉ ଯଦି କପାଳରେ ନାହିଁ, ତା ହେଲେ କେହି ତାକୁ ରଖି ପାରିବେ ନାହିଁ । ଠିକ୍ କଥା କହୁଛି କି ?

ଗଦା କହିଲା, "ହଁ, କଥା ତ ଠିକ୍, ତେବେ ମନଟା ବୁଝେ ନାହିଁ ।"

ଅଭୟ କହିଲା, "ତୁମେ ଏବେ ଯାଅ, ମୁଁ ତୁମ ଘରକୁ ଯାଉଛି । ଦେଖାଯାଉ ତୁମ କପାଳ ଫେରାଇବା ବ୍ୟବସ୍ଥା କରି ପାରିବି କି ନାହିଁ ।"

ବହୁ ଚେଷ୍ଟା କରି ମଧ୍ୟ ଗଦାର ପୁଅ ବଞ୍ଚିଲା ନାହିଁ । ଗ୍ରାମର ପ୍ରତି ଘରୁ କେହି ନା କେହି ମଲେ । କୌଣସି କୌଣସି ପରି-ବାର ସମ୍ପୂର୍ଣ୍ଣ ଶେଷ ହୋଇଗଲେ । କେବଳ ଅଭୟ ଘରେ ହଇଜା ପଶି ପାରିଲା ନାହିଁ ।

ମଡ଼କ ଯିବାର କେତେ ଦିନ ପରେ ଗ୍ରାମର କେତେ ଜଣ ଲୋକ ଅଭୟର ଦୋକାନକୁ ଆସିଲେ । ସେମାନଙ୍କ ସଙ୍ଗେ ଗଦାଧର ମଧ୍ୟ ଆସିଲା । ସେମାନେ ଅଭୟକୁ ପଚାରିଲେ, "ଆଚ୍ଛା ଅଭୟ, ସମସ୍ତଙ୍କ ଘରେ ଠାକୁରାଣୀ ପଶିଲେ, କିନ୍ତୁ ତୁମ ଘରେ ତ କିଛି ଭଲ ମନ୍ଦ ହେଲା ନାହିଁ । ତୁମର କପାଳ ଭାରି ଭଲ ।"

ଅଭୟ କହିଲା, "ଆଚ୍ଛା ଭାଇମାନେ, ତୁମ୍ଭମାନଙ୍କୁ ମୋ ମନର କଥାଟି କହିବି । ଅନେକଥର କହିଛି, ତୁମ୍ଭେମାନେ ଶୁଣି ନାହଁ; ଆଶା କରେ ଏଥର ଶୁଣିବ । ଭଗବାନ ମନୁଷ୍ୟକୁ ଅକାଳରେ ମାରନ୍ତି ନାହିଁ । କପାଳ ବୋଲି କିଛି ନାହିଁ । ସଂସା-ରରେ କେହି କେହି ଆତ୍ମହତ୍ୟା କରନ୍ତି, ଆଉ କେହି କେହି ମୂର୍ଖ ବୈଦ୍ୟ ହାତରେ ପଡ଼ି ମରନ୍ତି । ତୁମ୍ଭମାନଙ୍କୁ ମୁଁ କେତେଥର

କହୁଛନ୍ତି, ଏହି ପୋଖରୀ ପାଣି ପିଅ ନାହିଁ । ତଥାପି ତୁମ୍ଭେମାନେ ଶୁଣୁ ନାହଁ, ସେହି ପାଣି ସବୁବେଳେ ପିଉଛ । ସେଥିରେ ମଇଳା ଲୁଗା ଧୁଆ ହେଉଛି, ଗାଈ ମଇଁଷି ଗାଧୋଉଛନ୍ତି ସେ ପାଣି ପିଇଲେ ହଇଜା ହେବ ନାହିଁ ତ କଅଣ ? ମୁଁ ସ୍ୱତ ଧନ ପିଇବା ପାଣି ଫୁଟାଇ ନିଏ । ବଜାରର ମାଛିବସା ଗୁଡ଼, ମିଠାଇ ମୁଁ ଘରକୁ ଅଣେ ନାହିଁ । ଏ କଥା ଠିକ୍ ଯେ ମୁଁ ଓ ମୋର ପରିବାର ଅକାଳରେ ମରିବୁ ନାହିଁ । ତୁମ୍ଭେମାନେ ବଳି ଖାଇବ, ଏଣେ କାଳୀ ଠାକୁରାଣୀଙ୍କ ପୂଜା ଦେବ । ଗଛର ମୂଳକାଟି ଅଗରେ ପାଣି ଦେଲେ, କି ଲାଭ ? କପାଳ ମନୁଷ୍ୟକୁ ଗଢ଼େ ନାହିଁ, ମନୁଷ୍ୟ ନିଜର କପାଳକୁ ଗଢ଼େ । ସେଥି ସକାଶେ ମୋର କପାଳ ଭଲ ।”

ଗ୍ରାମ ପାଠଶାଳାର ପଣ୍ଡିତ ଭୂଷଣ ଦାସ ଟିକେ ବିରକ୍ତ ହୋଇ କହିଲେ, “କହୋ କମାରେ, କାହିଁ ଯୁଗରୁ ଆମେ କପାଳ ମାନି ଅସିଲୁଁ, ଆଜି ଅଜ କଥା ପଦକରେ ତୁମେ ତାକୁ ଉଡ଼ାଇ ଦେବ ? ଆମ ହାତରେ ଯେଉଁ ରେଖାସବୁ ଅଛି, ତାକୁ କିଏ ଗଢ଼ିଲା ?”

ପଣ୍ଡିତଙ୍କ ଏ କଥା କହିବାର କିଛି ଅର୍ଥ ଥିଲା । ସେ ଗ୍ରାମରେ ମାଷ୍ଟରୀ କରି ଦଶ-ବାର ଟଙ୍କା ଓ ଖୋରାକୀ ପାଆନ୍ତି । ତା ଛଡ଼ା ହାତ ଦେଖି ମଧ୍ୟ ଦୁଇ-ଚାରି ଗଣ୍ଡା ରୋଜଗାର କରନ୍ତି ।

ଅଭିମନ୍ୟୁ ଟିକେ ବିରକ୍ତ ହୋଇ କହିଲା, “କଥାଟା ଯେତେ-ବେଳେ ବାହାରିଲାଣି, ପଣ୍ଡିତେ, ମୁଁ କାହିଁକି ଚୁପ୍ ରହିବି ? ମୁଁ ସଫା ସଫା କହି ଦେଉଛି ଯେ ଏ ହାତ ଦେଖା କଥା ନିହାତି ମିଛ ।”

ପଣ୍ଡିତ ରାଗରେ ଗର ଗର ହୋଇ କହିଲେ, "କଅଣ କହୁଛ ? ଏସବୁ ମିଛ ? କେତେ ଜ୍ୟୋତିଷମାନେ ଗଣନା କରି ବଡ଼ ବଡ଼ କଥାମାନ ଆଗରୁ କହିଦେଇଛନ୍ତି । ସେମାନେ ସମସ୍ତେ କଣ ମିଛ କହୁଛନ୍ତି ?"

ଅଭୟ କହିଲା, "ପଣ୍ଡିତେ, ବିରକ୍ତ ହେବେ ନାହିଁ । ସତ ସତ ଏ ସବୁ ମିଥ୍ୟା ଓ ଫମ୍ପା କଥା । ମୁଁ କଲିକତାରେ ମାମୁଁ ଘରେ ଥିଲା ବେଳେ ଥରେ ତାଙ୍କ ଘରକୁ ଜଣେ ଅତି ଜ୍ଞାନୀ ପ୍ରଫେସର ବୁଲିବାକୁ ଆସିଥିଲେ । ସେ କହିଲେ ଯେ ହାତର ରେଖାସବୁ କିଛି ନୁହେଁ । ଏଥିରେ ଆମ୍ଭମାନଙ୍କର ଅତୀତ, ଭବିଷ୍ୟତ କି ବର୍ତ୍ତିମାନର କିଛି କଥା ଲେଖା ହୋଇ ନ ଥାଏ । ମାଙ୍କଡ଼ର ହାତରେ ମଧ୍ୟ ରେଖା ଅଛି । ମନୁଷ୍ୟ ଯେପରି ଭାବରେ ହାତ ମୁଠା କରେ, ହାତର ରେଖାସବୁ ଠିକ୍ ସେହି ପ୍ରକାର ପଡ଼େ । ଆପଣ ଯେ ପ୍ରକାର ହାତ ମୁଠା କରନ୍ତି, ଯଦି ସେ ପ୍ରକାର ନ କରି ଅନ୍ୟ ପ୍ରକାର କରିବେ, ତେବେ ଦେଖିବେ ଛ ମାସ କିମ୍ବା ବର୍ଷକ ମଧ୍ୟରେ ହାତର ରେଖାସବୁ ବଦଳିବାକୁ ଆରମ୍ଭ କରିବ । ଅଚ୍ଛା, ସେଦିନ ବଢ଼ି ପାଣିରେ ନୌକା ଓଲଟି ଯାଇ ଛଅ ଜଣ ଲୋକ ବୁଡ଼ି ମଲେ । ତେବେ କଣ ସେ ସମସ୍ତଙ୍କ ହାତରେ ଜୀବନର ରେଖା ଏକ ପ୍ରକାର ଥିଲା—ଯେ ଅମୁକ ଦିନରେ ସେମାନଙ୍କର ଅକାଳ ମରଣ ହେବ ?"

ଭୂଷଣ ପଣ୍ଡି କହିଲେ, "ତାହା ନ ହେଲେ, ଏତେ-ଗୁଡ଼ାଏ ଲୋକ ଏପରି ଭାବରେ ମଲେ କାହିଁକି ?"

ଅଭୟ କହିଲା, "ହୋଇ ପାରେ ସେମାନେ ଦୁଃସାହସୀ କିଅବା ଅସତର୍କ ଥିଲେ । ନିଜ ନିର୍ବୁଦ୍ଧିତା ପକାଇଁ ଯଦି

ମୃତ୍ୟୁ ଘଟେ ତେବେ କପାଳର ଦୋ'ଷ ଦେଇଲେ ଚଳିବ କପର ?

କଛିକ୍ଷଣ ରହି ଅଭୟ ପୁଣି ଆରମ୍ଭ କଲା, "ଶୁଣନ୍ତୁ ପଣ୍ଡିତେ, ଆପଣଙ୍କର ହାତ ଦେଖାଟା ମୁଁ ଆଦୌ ପସନ୍ଦ କରେ ନାହିଁ । ମୋର ପୁଅ ଯେଉଁଦିନ ପାଠଶାଳାରୁ ଆସି କହିଲା, ଆମ ପଣ୍ଡିତ ମହାଶୟ ହାତ ଦେଖି ଜାଣନ୍ତି, ସେଦିନ ମତେ ବଡ଼ ଦୁଃଖ ଲାଗିଲା । ସାନ ପିଲାଙ୍କ ମନରେ ଏସବୁ ଧାରଣା ପୂରାଇବା ଭଲ ନୁହେଁ । ସେହି ପ୍ରଫେସର ଆଜ୍ଞା କହୁଥିଲେ ଯେ ଯଦି ଜୀବନରେ କୌଣସି ଭଲ ବିଷୟ, ମହତ୍ ଶିକ୍ଷା, ଉଚ୍ଚ ଆଦର୍ଶକୁ ମୁଠା କରି ଧରି ପାରି, ତେବେ ହାତର ରେଖା ମଧ୍ୟ ଉଚ୍ଚ ଆଡ଼କୁ ଭୁମକୁ ବାଟ କଢ଼ାଇ ନେବ । ଥାଉ, ଆଉ ବେଶୀ କଥା କହିବି ନାହିଁ । ଆପଣମାନେ ଜାଣି ବିରକ୍ତ ହେଉଣି । କିନ୍ତୁ କଥା ପଡ଼ିବାରୁ ମୋ ମନର କଥା କହିଦେଲି ।"

ସମସ୍ତେ ଚୁପ୍ କରି ଫେରି ଗଲେ । ଖାଲି ଜନାର୍ଦ୍ଦନ ବୁଢ଼ା କହିଲେ, "ଦେଖ୍ତ, କମାରର ପୁଅଟାଏ, ଦି' ଅକ୍ଷର ପଢିବାରୁ ଆଜି ଆମ ମୁଣ୍ଡ ଉପରେ ଚଢି ବସୁଛି ।" ନଟବର ଯୁବା ପିଲା, ସେ କହିଲା, "ନାହିଁ ଅଜା, ସେ ଉପଯୁକ୍ତ କଥା କହୁଛନ୍ତି ।" ଗଦାଧର ବସି ବସି ସବୁ ଶୁଣିଗଲା ଭଲ ମନ୍ଦ କିଛି କହିଲା ନାହିଁ ।

ଏ ଘଟନାର ପ୍ରାୟ ଦୁଇ ମାସ ପରେ କ୍ଷେତରେ ଲୁଣିପାଣି ପଶିଲା । ଲୋକେ ମୁଣ୍ଡରେ ହାତ ଦେଇ ବସିଲେ । ଗଦାଧରର ଦି' ମାଣ ଖଣ୍ଡେ ଜମି ଥିଲା । ଅଭୟର ମଧ୍ୟ ପାଞ୍ଚ ମାଣ ଯାଏ ଥିଲା । ଅଭୟ ଗ୍ରାମବାସୀଙ୍କ ପରାମର୍ଶ କରି ବନ୍ଧ ବାନ୍ଧି ତା କ୍ଷେତର ଧାନ

ରକ୍ଷା କଲା । ଗଦାର ଜମିରେ ଲୁଣିପାଣି ପଶି ସବୁ ଧାନ ନଷ୍ଟ କରିଦେଲା ।

ଗଦା କହିଲା, "ଭାଇ ଅବୁଝ, ମୋ କପାଳ ମନ୍ଦ ଓ ତୁମ କପାଳ ଭଲ, ଅଉ ଏ କଥା କେବେହେଁ କହିବି ନାହିଁ । ଯଦି ତୁମ୍ଭ ପରି ସାବଧାନ ପରିଶ୍ରମ କରି ମୁଁ ମଧ୍ୟ ବନ୍ଧ ବାନ୍ଧିଥାନ୍ତି, ତେବେ ମୋ ଧାନ ର◌ା ପାଇଥାନ୍ତା । ଅଜିଠାରୁ ତୁମ୍ଭ ପରାମର୍ଶ ମାନି ଚଳିବି । 'କପାଳ, କପାଳ,' ଅଉ କହିବି ନାହିଁ ।

---

# କିପରି ମାପୁଛୁ ।

ଅବାସ ମୁଲ୍ଲାର ବୟସ ଅଶୀ ପାର ହୋଇଗଲାଣି । ପିବା ଅସିବା କରିବାକୁ ଅବା କାମ କରିବାକୁ ତାର ଅଉ ଶକ୍ତି ନାହିଁ । ସେ ତା ପୁଅ ପାଖରେ ଥାଏ ।

ପୁଅର ନାମ ହାଲିମ୍ । ଅବାସକୁ ତା ପୁଅ ବୋହୂ କିଛି ଆଦର ଯତ୍ନ କରନ୍ତି ନାହିଁ । ବରଂ ସେମାନେ ମନେ କରନ୍ତି ବୁଢ଼ାଟା ମଲେ ଜଞ୍ଜାଳ ଯାଆନ୍ତା ।

ବୁଢ଼ାଟି ଯାହା ପାରେ ଘରର ଛୋଟ ଛୋଟ କାର୍ଯ୍ୟ କରେ ଓ ସଞ୍ଜ ବେଳେ ନାତିକି ଧରି ବରଣ୍ଡାରେ ବସି କାହାଣୀ କହେ । ନାତିର ନାମ ମଜିଦ୍ । ମଜିଦ୍‌ର ବୟସ ତେର ବର୍ଷ ।

ସେ ଗ୍ରାମର ପାଠଶାଳାରେ ପାଠ ପଢ଼େ । ସେ ତାର ସାନ୍ତବାପାକୁ ଖୁବ ଶ୍ରଦ୍ଧା କରେ । ସେ ଭାବେ, "ଅହା, ବୁଢ଼ା ଲୋକଟି କେତେଦିନ ବା ଜଗତରେ ରହିବ, ତାକୁ ଟିକେ ସୁଖ ଦେଲେ କ୍ଷତି କଣ ?"

ହାକମ୍ ଓ ତା ସ୍ତ୍ରୀ କେବେ କେବେ ବୁଢ଼ା ଉପରେ ଅତ୍ୟାଚାର କରନ୍ତି । ବେମାର ହେଲେ ତା ସେବା କରନ୍ତି ନାହିଁ । ବୁଢ଼ା ଯାହା କିଛି ସେବା ପାଏ, ତାହା ନାତି ବସନ୍ତରୁ ପାଏ । ବୁଢ଼ାର ଖିଅପିଅ ବିଷୟ କେହୁ ଦେଖେ ନାହିଁ । ବୋହୂ ଶ୍ୱଶୁରକୁ ଥାଳରେ ଭାତ ନ ଦେଇ ଗୋଟିଏ ପଲମରେ ବାଢ଼ି ଦିଏ । ପଲମଟା ପୁଣି ଖଣ୍ଡିଆ ।

ଥରେ ଖୁବ୍ ବର୍ଷା ହେଲା । ପଡ଼ିଆ, ବାଟସବୁ ପାଣିରେ ବୁଡ଼ିଗଲା । ବୁଢ଼ାକୁ ଥଣ୍ଡା ଧରିଲା । କ୍ରମେ କ୍ରମେ ତାର ରୋଗ ବଢ଼ିବାକୁ ଲାଗିଲା । ହାକମ୍ ଡାକ୍ତର ଡାକିଲା ନାହିଁ; କିମ୍ବା କୌଣସି ପଥ୍ୟର ବ୍ୟବସ୍ଥା ମଧ୍ୟ କଲା ନାହିଁ । ଦ୍ୱିପହର ହେଲେ ସେହି ଭଙ୍ଗା ପଲମରେ ହାକମ ପଖାଳ ମୁଠାଏ ଆଣି ବୁଢ଼ାକୁ ଦିଏ । ବୁଢ଼ା ଟିକେ ଖାଇ ଫୋପାଡ଼ି ଦିଏ । ବୁଢ଼ାର ନାତି ସବୁ ଦେଖେ ଓ ଲୁଚି ଲୁଚି କାନ୍ଦେ ।

ଦଶ ଦିନ ଖଣ୍ଡେ ରୋଗ ଭୋଗି ବୁଢ଼ା ମରିଗଲା । ହାକମ୍ ବୁଢ଼ାକୁ ଦାହ କରି ଦେଲା ଓ ଫେରି ଆସି ଘର ଦ୍ୱାର ସବୁ ସଫା କଲା । ଭଙ୍ଗା ପଲମଟି ଫୋପାଡ଼ି ଦେବାକୁ ଯାଉଛି, ଏମିତି ସମୟରେ ମଜିଦ୍ ଦୌଡ଼ି ଆସି କହିଲା, "ଥାଉ ବାପା, ସେଇଟା ଫୋପାଡ଼ ନାହିଁ, ସେଇଟା ମୁଁ ରଖିବି ।"

ବାପା କହିଲେ,—"ଏଇଟା ନେଇ ତୁ କଣ କରିବୁ ?"

ମଜିଦ୍ କହିଲା, "ବାପା, ମୁଁ ଏଇଟା ରଖିଥିବି । ତୁମେ ତ ପୁଣି ଦିନେ ବୁଢ଼ା ହେବ, ସେତେବେଳେ ଏହି ପଲମରେ ତୁମକୁ ଭାତ ଖାଇବାକୁ ଦେବି ।" ହାକମ୍ ଶୁଣି ଭାବା ।

ମନେ ରଖ, ଉଦ୍ଧାର ସେବକ ଧ'ଷା ହେବ ନାହିଁ । ଯେଉଁପରି ମାପରେ ମାପ କର, ସେହିପରି ମାପରେ ପରିଶୋଧ ପାଇବ ।

---

# ସାଧନାର ଫଳ ।

ଭାନୁ ନାମରେ ଜଣେ ଯୁବକ ଥିଲା । ଲୋକଙ୍କର ଟଙ୍କା ପଇସା ଲୁଟ୍‌ପାଟ୍ କରି ନେଇଯିବା ଥିଲା ତାର ବ୍ୟବସାୟ । ତା ମନଟା ଥିଲା ଠିକ୍ ପଥର ପରି ଟାଣ । ସେ ଯେତେବେଳେ ଡକାଇତି କରିବା ପାଇଁ କାହାର ଘରେ ପଶେ ସେତେବେଳେ ସାନପିଲା କିମ୍ବା କାହାର ପ୍ରତି ସେ ଦୟା ପ୍ରକାଶ କରେ ନାହିଁ । ସମସ୍ତଙ୍କୁ ମାଡ଼ପିଟ୍ କରେ ।

ତା ଗ୍ରାମର ଅନାଥ ମିଶ୍ର ଜଣେ ସାଧୁ ଲୋକ ଥିଲେ । ତାଙ୍କର ଗୋଟିଏ ସୁନ୍ଦରୀ ଝିଅ ଥିଲା । ଝିଅଟି ଯେତେବେଳେ ବଡ଼ ହେଲା ସେତେବେଳେ ତାର ବାପା ଝିଅର ନିମନ୍ତେ ଉପଯୁକ୍ତ ବର ଖୋଜିବାକୁ ଲାଗିଲେ । ସେହି ଝିଅକୁ ବିବାହ କରିବାକୁ ଭାନୁର ବଡ଼ ଇଚ୍ଛା ଥିଲା ।

ଦିନେ ସେ ତାକୁ ଚୋରି କରିବା ଲାଗି ଅନାଥ ମିଶ୍ରଙ୍କ ଘରେ ପଶି ଶୁଣି ପାରିଲା ଯେ ମିଶ୍ରେ ତାଙ୍କ ସ୍ତ୍ରୀକୁ କହୁଛନ୍ତି, "ମୁଁ ହାଲିଆଣ ହୋଇଗଲିଣି, ଝିଅଲାଗି ତ ଆଜି ପର୍ଯ୍ୟନ୍ତ ଖୋଜି ଖୋଜି କୌଣସି ଉପଯୁକ୍ତ ବର ପାଇଲି ନାହିଁ । ଯାହାହେଉ, ମୁଁ ଆଜି ପଣ କରୁଛି ଯେ କାଲିଠାରୁ ଏକ ମାସ ପର୍ଯ୍ୟନ୍ତ ନିୟମିତ ଭାବରେ ଯେଉଁ ଯୁବକ ଆମ ଦୈନିକ ପ୍ରାର୍ଥନାକୁ ସମସ୍ତଙ୍କ ଆଗେ ଯିବ ଓ ସମସ୍ତଙ୍କ ଶେଷରେ ବାହାରି ହେବ ତାକୁ କନ୍ୟା ଦାନ କରିବି ।"

ବାଳୁ ଏ କଥା ଶୁଣି ଘରକୁ ଫେରି ଅସିଲା ଓ ତା ପର-ଦିନଠାରୁ ସେ ଠିକ୍ ନିୟମିତ ଭାବରେ ସମସ୍ତଙ୍କ ଆଗେ ସଭାକୁ ଯାଏ ଓ ସମସ୍ତଙ୍କ ଶେଷରେ ଗୀର୍ଜାରୁ ବାହାରି ହୁଏ ।

ଏକ ମାସ ପରେ ମିଶ୍ରେ ଦେଖିଲେ ଯେ ବାଳୁ ଲଗାତାର ପ୍ରତିଦିନ ସମସ୍ତଙ୍କ ଆଗେ ପ୍ରାର୍ଥନା ସଭାକୁ ଯାଏ ଓ ସମସ୍ତଙ୍କ ଶେଷରେ ବାହାରି ହୁଏ । ତାଙ୍କର ପଣ କଥା ଭାବି ସେ ଚିନ୍ତିତ ହୋଇ ଉଠିଲେ । କିନ୍ତୁ ନିଜ କଥା ରକ୍ଷା କରିବା ଲାଗି ଝିଅର ବିବାହ ନେଇ ତାଙ୍କୁ ବାଳୁ ନିକଟକୁ ଯିବାକୁ ହେଲା । ପାଖକୁ ଯାଇ ମିଶ୍ରେ ଦେଖିଲେ ଯେ ବାଳୁର ଚେହେରା ବଦଳି ଯାଇଛି । ତା ମୁଖରେ ଆଉ କଠୋରତା ନାହିଁ । ତାକୁ ଦେଖିଲେ ଏବେ ମନରେ ଭୟ ଆସୁ ନାହିଁ । ବରଂ ଭକ୍ତି ଆସୁଛି ।

ମିଶ୍ରେ ତା ଘରେ ପହଞ୍ଚିଲା ବେଳକୁ ବାଳୁ ହାତ ଯୋଡ଼ି ଏକ ମନରେ କାନ୍ଦି କାନ୍ଦି ପ୍ରାର୍ଥନା କରୁଥାଏ ।

ତା ପ୍ରାର୍ଥନା ଶେଷ ହେଲାରୁ ମିଶ୍ରେ ତାକୁ କହିଲେ, "ବାବା ମୁଁ ତୁମ ସହିତ ମୋ ଝିଅର ବିବାହ ପ୍ରସ୍ତାବ ନେଇ ଆସିଛି ।"

ବାଳୁ ଏହା ଶୁଣି, ହାତଯୋଡ଼ି କହିଲା, "ମୋତେ କ୍ଷମା କରନ୍ତୁ । ସମୟ ଥିଲା ଯେତେବେଳେ ତୁମ ଝିଅକୁ ପାଇବାକୁ ମୁଁ ବ୍ୟାକୁଳ ଥିଲି, କିନ୍ତୁ ଏବେ ମୁଁ ସେହି ଅନାଥର ନାଥ, ଜଗତର ଗୁରୁ, ପରମ ଦୟାଳୁ, ମୁକ୍ତିଦାତା ଭଗବାନଙ୍କ ପାଇଁ ବ୍ୟାକୁଳ । ଏବେ ମୋର ସଂସାର ସଙ୍ଗେ ଆଉ କୌଣସି ସମ୍ପର୍କ ନାହିଁ ।"

ମିଶ୍ରେ ବିସ୍ମିତ ହୋଇ ଭାବିଲେ, "ମାସକର ସାଧନାରେ ଏତେ ଫଳ ।"

---

# ଜମିର ନିଶା *

ସୁନାବଲ ଗ୍ରାମର ଧଲଜାନ୍ ଥିଲା ଜଣେ ଖାଣ୍ଟି ଲୋକ । ଗ୍ରାମର ସମସ୍ତେ ତାକୁ ଶ୍ରଦ୍ଧା କରନ୍ତି ଓ ମାନି ଚଳନ୍ତି । କିସ୍ୱା କର୍ମ, ବସ୍ତୁର ଆଦି ସବୁ ସମୟରେ ତାକୁ ଡାକ ପଡ଼େ । ଧଲ୍‌ଜାନ୍‌ର ପରିବାର ମଧ୍ୟରେ ସେ, ତାର ସ୍ତ୍ରୀ ଓ ଦୁଇଟି ପୁଅ । ପୁଅ ଦୁଇଟି ଶ୍ରେଷ୍ଠ । କେବଳ ମାତ୍ର ପନ୍ଦର ମାଣ ଜମି ଧଲ୍‌ଜାନ୍‌ର ସର୍ବସ୍ୱ । ସେହି ଜମି ଚାଷବାସ କରି ତାର ବର୍ଷକର ଖୋରାକ ଓ ଖଜଣା ଉଠିଯାଉଥାଏ । ଧନଗୁଣ୍ଡକ ବେଶ୍ ସୁଖରେ କଟି-ଯାଉଥିଲା । ଏ ସମୟରେ ତାକୁ ମାଡ଼ି ବସିଲା ଜମିର ନିଶା ।

ସେ, ଦିନ ରାତ ନାନା ସୁଖ ସ୍ୱପ୍ନ ଦେଖିବାକୁ ଲାଗିଲା । ସ୍ୱପ୍ନରେ ସେ ଦେଖିଲା ଯେ ତାର ଦୁଇଶ ମାଣ ଜମି ହୋଇଛି, ଅଜସ୍ର ଧାନ ଓ ଟୋଙ୍କ ବଳ ସେ ମସ୍ତବଡ଼ କୋଠା ତିଆରି କରିଛି । ସେ କେତେ ଗୁଳରବାଜର, ଦାସ ଦାସୀ ରଖିଛି, ଅଜ କେତେ ଲୋକ ତାର ପାଖେ ଆସି ମୁଣ୍ଡ ନୁଆଁଇ ସମ୍ମାନ କରୁଛନ୍ତି । ଏହିପରି ଅଜୁର କେତେ କଣ । ବର୍ତ୍ତମାନ ତାକୁ ଚିନ୍ତା ଗ୍ରାସିଲା ସେ କେମିତି ଜମି ବଢ଼େଇବ । ଟଙ୍କା କରଜ କରି ମଧ୍ୟ ଜମି କିଣିବାକୁ ସେ ସ୍ଥିର କଲା ।

ଧଲ୍‌ଜାନର ସ୍ତ୍ରୀ ତାକୁ କହିଲା, "ମିଛରେ ଜମି ଜମି କହି ପାଗଳ ହେଉଛ କାହିଁକି ? ପନ୍ଦର ମାଣ ଜମିରେ ଆମର କଣ ସୁଖ ସ୍ୱଚ୍ଛନ୍ଦରେ ଦିନ ଚଳିଯାଉ ନାହିଁ ? ପୁଅମାନେ ବଡ଼

* (ଟଲ୍‌ଷ୍ଟୟଙ୍କର "ଜଣେ ମନୁଷ୍ୟ ପାଇଁ କେତେ ଜମି ଦରକାର" ଗଳ୍ପର ଛାୟା ଅବଲମ୍ବନେ ଲେଖା ।)

ହୁଅନ୍ତୁ, ସେତେବେଳେ ପଛରେ ଜମି ବଢ଼େଇବାର ଚେଷ୍ଟା କରବ ।"

ଦାଲ୍ଜାନ୍ କହିଲା, "ବାସ୍ନାଣୀଟା କଲେ! ପନ୍ଦର ମାଣ ଜମି ତୋର ଜମିରେ ଲେଖା। ଦେଖୁଥା, ମୁଁ ଶୀଘ୍ର ଗୁଳାଣ ପଚିଶ ମାଣ ଜମି କିଣିବାର ବ୍ୟବସ୍ଥା କରୁଛି । ସେତେବେଳେ ତତେ ଧାନ ଉଁସେଇବାକୁ ପଡ଼ିବ ନାହିଁ କି ଢ଼ିଙ୍କି ଚଢ଼ିବାକୁ ପଡ଼ିବ ନାହିଁ।"

କିଛି ଦିନ କଟିଗଲା। ଦିନେ ଗ୍ରାମରେ ଖବର ପ୍ରକାଶ ପାଇଲା ଯେ ଗ୍ରାମଟି ଜଣେ ନୂଆ ଜମିଦାର କିଣି ନେଇଛନ୍ତି। ସଙ୍ଗେ ସଙ୍ଗେ ଜଣେ ନୂଆ ଗୁମାସ୍ତା ଆସିଲେ ଖଜଣା ଆଦାୟ କରିବାକୁ। ସେ ବଡ଼ କଠୋର ଲୋକ, ସେ ଜୋର ଜୁଲମ କରି ଖଜଣା ଆଦାୟ କରିବାକୁ ଲାଗିଲେ। ତାଙ୍କ ଅତ୍ୟାଚାର ସହି ନ ପାରି କେତେ ପ୍ରଜା ଜମି ବିକି ଦେଇ ଅନ୍ୟ ଗାଁକୁ ପଳେଇଲେ। ଦାଲ୍ଜାନ୍ ଶସ୍ତାରେ କିଛି ଜମି କିଣି ନେଲା। ତାର ପ୍ରାୟ ତିରିଶ ମାଣ ଜମି ହେଲା। ଏଥିକ୍ଷଣି ସେ ଗୋଟିଏ ଛୋଟ ଜମିଦାର।

କିନ୍ତୁ ତିରିଶ ମାଣ ଜମି ହେଲେ ବି ଦାଲ୍ଜାନ୍ ସୁଖୀ ହୋଇ ପାରିଲା ନାହିଁ। ସେ ଖବର ପାଇଲା ଯେ ନଈ ସେପାରିରେ ପ୍ରାୟ ପଚିଶ ମାଣ ଜମି ଖୁବ୍ ଶସ୍ତାରେ ମିଳୁଛି। ସେ ଦିନେ ନିଜେ ଯାଇ ଜମି ଦେଖି ଆସିଲା। ଦେଖିଲା ସେ ଜାଗାର ଜମି ସୁନାତଳା ଗ୍ରାମର ଜମିଠାରୁ ଅଧିକ ଭଲ। ତାର ସ୍ତ୍ରୀ ତାକୁ କେତେ ବୁଝାଇଲା, କିନ୍ତୁ ସେ ତା କଥା ଶୁଣିଲା ନାହିଁ। କଚେରୀକୁ ଯାଇ ଗୁମାସ୍ତା ବାବୁ ସଙ୍ଗେ କଥାବାର୍ତ୍ତା କରି ଦୁଇଶ' ଟଙ୍କାରେ ତାର

କେବଳ ମାଣ ଜମି କିଣି ନେଲା । ସେଇଠୁଁ ଅଣ୍ଟାରେ ଟଙ୍କା ଖୋସି, ଗାଈ, ବାଛୁରୀ, ପିଲା, ସ୍ତ୍ରୀକୁ ନେଇ ନଈ ଅରପାରିକୁ ଗୃଲିଗଲା । ସେଇ ଟଙ୍କାରେ ପନ୍ଦର ମାଣ ଜମି କିଣି ସେଠି ନୂଆ ଘର କରି ରହିଲା ।

ସେ ଜାଗାର ଜମି ଭଲ ଥିଲା । ବର୍ଷେ ଦୁଇ ବର୍ଷ ପରିଶ୍ରମ କରି ସେ ବହୁତ ଫସଲ ପାଇଲା । ସେ ବର୍ଷ ଗୋଟାଏ ଗୋଟ ଚଢ଼ା ଥିଲା । ସେ ପ୍ରାୟ ଦୁଇଶ' ଟଙ୍କାର ଗୋଟ ବିକି କରି ସେହି ଟଙ୍କାରେ ଶସ୍ତା ଦରରେ ଆହୁରି କୋଡ଼ିଏ ମାଣ ଜମି କିଣିଲା ।

ତାର ସ୍ତ୍ରୀ କହିଲା, "ଏତେ ଜମି କଅଣ ହେବ ? ତୁମେ ଏକା ମଣିଷ, ସବୁ ଦେଖା ଶୁଣା କରିବ କିପରି ?"

ଧଲ୍‌ଜାନ୍ କହିଲା, "ତୁ ସ୍ତ୍ରୀ ଲୋକ, ତୁ ବୁଝିବୁ କଣ ?"

ସ୍ତ୍ରୀ କହିଲା, "ଏତିକି ବୁଝୁଛି ଯେ ବେଶୀ ଲୋଭ ଭଲ ନୁହେଁ । ସେ ଧନ ଗୋଟା କଟା ସମୟରେ ତ ମାଡ଼ ମଗ୍ନମରି ହୋଇଥାନ୍ତ । ତୁମେ ପୁଣି ଯାଉଥିଲ ସହରରେ ନାଲିସ କରି-ବାକୁ । ଯଦି ମୁଁ ବାଧା ଦେଇ ନ ଥାନ୍ତି, ଗୋଟ ବିକିର ସବୁ ଟଙ୍କା ତୁମେ ମାମଲାରେ ଉଡ଼ାଇ ଦେଇଥାନ୍ତ ।"

ଧଲ୍‌ଜାନ୍ କହିଲା, "ଦେଖ୍, ଜମିଦାରୀ କରିବାକୁ ଗଲେ ମାମଲା ମକଦ୍ଦମା ଦରକାର । ସେ ସବୁ ତୁ ବୁଝିବୁ କଅଣ ?"

ଏହିପରି ଦିନ ଯାଉଥାଏ; କିନ୍ତୁ ଧଲ୍‌ଜାନ୍‌ର ମନରେ ଶାନ୍ତି ନାହିଁ । ସେ ଆହୁରି ଜମି ଗୃହେଁ । ଆପଣା ପଡ଼ିଶାଙ୍କୁ ଉଠ ଛଡ଼ା କରି ସୁଦ୍ଧା ଯଦି କିଛି ଜମି ମିଳିଯାଏ, ସେଥିରେ ମଧ୍ୟ ତାର କୌଣସି ଆପତ୍ତି ନାହିଁ ।

ଦିନେ ସେହି ଗ୍ରାମକୁ ଜଣେ ଅପରିଚିତ ଲୋକ ଆସିଲା । ପଚାରି ପଚାରି କରି ସେ ଦଲ୍‌ଜାନ୍ ଘରେ ଆସି ପହଞ୍ଚିଲା । ସେ ଖୁବ୍ ସୁନ୍ଦର ପୋଷାକ ଓ ପାଦରେ ଦାମୀ ଜୋତା ପିନ୍ଧିଥିଲା । ସେ ଲୋକଟି ବଡ଼ପଣିଆ ଦେଖାଇ ଦଲ୍‌ଜାନ୍‌କୁ ଏପରି ମୋହି-ଦେଲା ଯେ ଦଲ୍‌ଜାନ୍ ତାଙ୍କୁ ରାତିଟା ନିଜ ଘରେ ରହିବାକୁ ଅନୁରୋଧ କଲା । ଲୋକଟି ଆପଣା ମୁଣି ଫିଟାଇ ଦୁଇଟା ଖେଳଣା କାଢ଼ି ଦଲ୍‌ଜାନ୍‌ର ପୁଅମାନଙ୍କୁ ଦେଲା । ରାତିରେ ଖାଇବା ପରେ କଥାବାର୍ତ୍ତା ଭିତରେ ସେ ଦଲ୍‌ଜାନ୍‌କୁ ଜଣାଇଲା ଯେ ପ୍ରାୟ ପନ୍ଦର ମାଇଲ ଉତ୍ତରରେ କେତେ ଜଣ ମାରବାଡ଼ୀ ପାଞ୍ଚ ହଜାର ମାଣ ଖୁବ୍ ଭଲ ଅବାଦୀ ଜମି ସରକାରଠାରୁ ନେଇଛନ୍ତି । ଖୁସି ଖୁସିରେ ବିକି ଦେଉଛନ୍ତି । ସେ ନିଜେ ଷୁହ ଶ' ଟଙ୍କାରେ ପ୍ରାୟ ପାଞ୍ଚ ଶ' ମାଣ ଜମି ନେଇ ଚାଷ କରୁଛନ୍ତି । ଭଲ ଜମି, ସେଥିରେ ସୁନା ଫଳୁଛି ପରା !

ରାତିରେ ଶୋଇବାକୁ ଯିବା ସମୟରେ ଦଲ୍‌ଜାନ୍‌ର ସ୍ତ୍ରୀ କହିଲା, "ଦେଖ, ଏ ଲୋକଟାକୁ ମୋତେ ଆଦୌ ଭଲ ଲାଗୁ ନାହିଁ ; ଯାର କଥା ତୁମେ ଜମା ଶୁଣିବ ନାହିଁ ।" ଦଲ୍‌ଜାନ୍‌ର ମୁଣ୍ଡରେ ସେତେବେଳକୁ ପାଞ୍ଚ ଶ' ମାଣ ଜମିର ସ୍ୱପ୍ନ ।

ସେ ସ୍ତ୍ରୀକୁ ଧମକ ଦେଇ କହିଲା, "ତୁ ତ, ମାମଲତକାର ହୋଇ ଗଲୁଣି । ବେଶୀ କଥା କହ ନା, ଚୁପ୍ ହୋଇ ଶୋଇପଡ଼୍ ।"

ବଡ଼ି ଭୋରରୁ ସେହି ଅପରିଚିତ ଲୋକ ସଙ୍ଗେ ଦଲ୍‌ଜାନ୍‌ର ଅନେକ କେତେ କଥାବାର୍ତ୍ତା ହେଲା । ଠିକ୍ ହେଲା ଯେ ସେହି ବିଦେଶୀ ସାତ ଦିନ ଭିତରେ ପୁଣି ଆସିବ ଓ ଦଲ୍‌ଜାନ୍ ତା' ସଙ୍ଗରେ ଯିବ । ଏହି ସାତ ଦିନ ମଧ୍ୟରେ ଦଲ୍‌ଜାନ୍ ଷୁହ ଶ' ଟଙ୍କା

ଯୋଗାଡ଼ କରି ରଖିବ । ଲୋକଟା ବହୁତ ସମ୍ମାନ ଜଣାଇ ବିଦାୟ ନେଲା ।

ଦଲ୍‌ଜାନ୍‌ର ମୁଣ୍ଡରେ ଟଙ୍କାର ଚିନ୍ତା ଖେଳିବାକୁ ଲାଗିଲା । ତା'ପାଖରେ କେବଳ ଶହେ ଟଙ୍କା ଥାଏ । ଅଧିକ ତିନି ଶ' ଟଙ୍କା କେମିତି ହେଲେ ଯୋଗାଡ଼ କରିବାକୁ ହେବ' । ସ୍ତ୍ରୀର ଗହଣା ବନ୍ଧା ରଖି ମହାଜନଠାରୁ ପଚାଶ ଟଙ୍କା ଆଣିଲା । ଅଧିକ ତ ଦୁଇ ଶ' ପଚାଶ ଟଙ୍କା ବାକୀ । କମିର ଜଣା ତାକୁ ଗ୍ରାସିଛି । ସ୍ତ୍ରୀକୁ କିଛି ନ ଜଣାଇ ସେ ଜମିଦାର କତରେ ନିଜର ଜମିରେ ସବୁ ବନ୍ଧା ରଖି ଦୁଇ ଶ' ପଚାଶ ଟଙ୍କା ଆଣିଲା ।

ସାତ ଦିନ ପରେ ସେହି ଲୋକଟା ଠିକ୍ ଆସି ପହଞ୍ଚିଲା । ଜଣେ ବିଶ୍ୱସ୍ତ ଯୁବକକୁ ସଙ୍ଗରେ ନେଇ ଦଲ୍‌ଜାନ୍ ବାହାରି ପଡ଼ିଲା । ପ୍ରାୟ ଚାରି ଦିନର ବାଟ ଗଲା ପରେ ସେମାନେ ଏକ ବଡ଼ ନଦୀ କୂଳରେ ଆସି ପହଞ୍ଚିଲେ । ନଦୀ ପାରି ହେଲେ କୋଣେ ଖଣ୍ଡେ ଯାଏ ଘୋର ଜଙ୍ଗଲ । ତା ଉତ୍ତରରେ ଯେତେ ଦୂର ଦିଶୁଛି କେବଳ ଜମି—ଚମତ୍କାର ଜମି ।

ସେ ଦୁଇ ଜଣ ଗୋଟିଏ ପୁରୁଣା ପକ୍କା ଘରେ ଯାଇ ପହଞ୍ଚିଲେ ଓ ଦେଖିଲେ ଯେ ସେଠାରେ କୋଡ଼ିଏ ବାଇଶ ଜଣ ମାଇବାଡ଼ୀ ବସି କଣା ସେବନ କରୁଛନ୍ତି । କେତେ ଜଣ ଗୃହୀ ମଧ୍ୟ ସେଠି ଥିଲେ ।

ଦଲ୍‌ଜାନ୍‌ର ବନ୍ଧୁଟି ସେହି ଲୋକମାନଙ୍କ ନିକଟରେ ଦଲ୍‌ଜାନ୍‌ର ପରିଚୟ କରାଇ ଦେଲା ଓ କହିଲା, 'ଦଲ୍‌ଜାନ୍ ଜମି କିଣିବାକୁ ଆସିଛି । ମାଇବାଡ଼ୀଦଳର ସର୍ଦ୍ଦାର ଅଧ ଖଣ୍ଡିଆ ବଙ୍ଗଳାରେ ଦଲ୍‌ଜାନ୍‌କୁ କହିଲା, "ବେଶ୍ କଥା, ବେଶ୍

କଥା, ବହୁତ ଜମି ଅଛି, ଆପଣ ଯେତେ ଇଚ୍ଛା କରିବେ, ନେବେ ।”

ଧଲ୍‌ଜାନ୍ କହିଲା, “ହଁ, ସେ କଥା ଠିକ୍ । ଆପଣମାନେ ଖୁବ୍ ଭଲ ଲୋକ; କିନ୍ତୁ ଜମିର ଗୋଟିଏ ପକ୍କା ବନ୍ଦୋବସ୍ତ କରି ନେବାକୁ ହେବ ତ ।”

ସର୍ଦ୍ଦାର କହିଲା, “ନିଶ୍ଚୟ, ନିଶ୍ଚୟ, ମୁଁ ସହରକୁ ନେଇ ଆପଣଙ୍କର ଦଲିଲ୍ ରେଜେଷ୍ଟ୍ରୀ କରି ଦେବି ।”

ଧଲ୍‌ଜାନ୍ କହିଲା, “ଭଲ କଥା, ତା’ ହେଲେ ଆପଣ-ମାନଙ୍କର ଜମିର ଦର ଦାମ୍ କହନ୍ତୁ ।”

ସର୍ଦ୍ଦାର କହିଲା, “ଆମ ଜମିର ଗୋଟିଏ କାଳ ଏକା ଦାମ୍ । ଦିନକୁ ଚାରି ଶ’ ଟଙ୍କା ।”

ଧଲ୍‌ଜାନ୍ କହିଲା, “ଦିନକୁ କହିଲେ କଅଣ ଅର୍ଥ ? କେତେ ମାଣ ହେବ ?”

ସର୍ଦ୍ଦାର କହିଲା, “ଆମ୍ଭେମାନେ ଦିନ ହିସାବରେ ବିକି କରୁଁ । ଦିନକ ମଧ୍ୟରେ ଆପଣ ପାଦରେ ଚାଲି ଯେତେ ଦୂର ଯାଏ ଘୂରି ଆସି ପାରିବେ, ସେତକ ଜମି ଆପଣଙ୍କର ହେବ । ତା ଦାମ୍ କେବଳ ଚାରି ଶ’ ଟଙ୍କା ।”

ଧଲ୍‌ଜାନ୍ ଆଶ୍ଚର୍ଯ୍ୟ ହୋଇ କହିଲା, “ଦିନକରେ ତ ବହୁତ ଜମି ଘୂରି ଆସି ହେବ ।”

ସର୍ଦ୍ଦାର ହସି କହିଲା—“ବେଶ୍ ତ ସେ ସବୁ ଆପଣଙ୍କର ହେବ । କିନ୍ତୁ ଗୋଟିଏ କଥା ଅଛି—ସୂର୍ଯ୍ୟ ଉଠିବା ସଙ୍ଗେ ସଙ୍ଗେ ଆପଣ ବାହାରି ପାରନ୍ତି, କିନ୍ତୁ ଯେଉଁ ସ୍ଥାନରୁ ବାହାରିବେ,

ସୂର୍ଯ୍ୟ ବୁଡ଼ିବା ପୂର୍ବରୁ ସେହି ସ୍ଥାନକୁ ଫେରି ଆସିବାକୁ ହେବ । ନୋହିଲେ ଆପଣଙ୍କର ସବୁ ଟଙ୍କା ବୁଡ଼ି ଯିବ ।

ଦାଲ୍‌ଜାନ୍ କହିଲା, "ସେଥିପାଇଁ ଭାବନା ନାହିଁ, ସୂର୍ଯ୍ୟ ବୁଡ଼ିବା ଆଗରୁହିଁ ମୁଁ ଆସି ପହୁଞ୍ଚିବି । କିନ୍ତୁ କିଛି ଗୋଟାଏ ଚିହ୍ନ ଦେବାକୁ ହେବ ।"

ସର୍ଦ୍ଦାର କହିଲା, "ହଁ, ନିଶ୍ଚୟ । ସଙ୍ଗରେ ଗୋଟିଏ କୋଦାଳ ନେବେ; ଯେଉଁଠାରେ ଚିହ୍ନ ଦେବାର ଦରକାର ମନେ କରିବେ, ସେଠାରେ ଟିକେ ଖୋଳି ମାଟି ଗଦା କରି ଦେବେ । ଆପଣଙ୍କୁ ଆମ୍ଭେମାନେ ଠକିବୁ ନାହିଁ—କେବେ ଠିକ୍ ସୂର୍ଯ୍ୟ ବୁଡ଼ିବା ଆଗରୁ ପହୁଞ୍ଚିବା ପ୍ରୟୋଜନ ।"

ଦାଲ୍‌ଜାନ୍ ସବୁ ପକ୍କା ବନ୍ଦୋବସ୍ତ କରି ଖାଇ ପିଇ ଶୋଇବାକୁ ଗଲା । ଅତି ଅଧିକ ଆନନ୍ଦ ହେତୁ ତାକୁ ରାତିରେ ଭଲ ନିଦ ମଧ୍ୟ ହେଲା ନାହିଁ; କିନ୍ତୁ ପାହାନ୍ତା ଆଡ଼କୁ ସେ ଶୋଇ ପଡ଼ିଲା । ସେ ସ୍ୱପ୍ନରେ ଦେଖିଲା ଯେ ଜଣେ ଲୋକ ପାଟି କରି ବହୁତ ହସୁଛି । ଅଳ୍ପ ସମୟ ପରେ ତାକୁ ଜଣା ପଡ଼ିଲା ଯେ ହସିବା ମଣିଷଟି ମାରବାଡ଼ୀ ସର୍ଦ୍ଦାର । ତା ପରେ ଦାଲ୍‌ଜାନ୍‌ର ମନେ ହେଲା,—ସେ ତ ସର୍ଦ୍ଦାର ନୁହେଁ, ସେ ସେହି ଅପରିଚିତ ଲୋକ ଯେ ମୋତେ ତାଙ୍କ ଆଣିଛି । ତା ପରେ ପୁଣି ମନେ ହେଲା ଯେ ସେ ଗୋଟାଏ ଭୂତ । ଆଉ ସେହି ଭୂତ ଆଗରେ ଖାଲି ଦେହରେ, ଖାଲି ପାଦରେ, ଗୋଟାଏ ମଲା ମଣିଷ ପଡ଼ିଛି । ଟିକେ ଭଲ କରି ଦେଖିବାରୁ ବୁଝିପାରିଲା ଯେ ସେହି ମଲା ମଣିଷ ଆଉ କେହି ନୁହେଁ—ସେ ନିଜେ ।

ସ୍ୱପ୍ନର ଭୟରେ ତାର ସମସ୍ତ ଦେହ ଶୀତେଇ ଉଠିଲା ଓ ତା ନିଦ ଭାଙ୍ଗିଲା ।

ନିଦରୁ ଉଠି ସେ ଭାବିଲା, "ଏ କିଛି ନୁହେଁ, ସ୍ୱପ୍ନରେ ମଣିଷ କଅଣ ନ ଦେଖେ ?" ସେତେବେଳକୁ ପ୍ରାୟ ସକାଳ ହେଲାଣି । ସେ ବାହାରକୁ ଆସି ଡକା ଡକି କରି ସମସ୍ତଙ୍କୁ ଉଠାଇ ଦେଲା ।

ସୂର୍ଯ୍ୟ ନ ଉଠୁଣୁ ସମସ୍ତେ ବାହାରି ପଡ଼ିଲେ । ଗୋଟିଏ ଉଚ୍ଚ ଢ଼ିପ ଉପରକୁ ସମସ୍ତେ ଚଢ଼ିଲେ । ସର୍ଦ୍ଦାର ସମସ୍ତଙ୍କ ସାମ୍ନାରେ ଗାମୁଛା ବିଛାଇ ଦେଲା । ଫିଲ୍‌ଜାନ୍ ଅଣ୍ଟାରୁ ହଜାର ଶ' ଟଙ୍କା କାଢ଼ି ସମସ୍ତଙ୍କ ସାମ୍ନାରେ ଟଙ୍କା ଗଣି ଗାମୁଛା ଉପରେ ରଖିଲା ।

ସର୍ଦ୍ଦାର ଠିଆ ହୋଇ କହିଲା, "ବେଶ୍, ଏବେ ଏହି କୋଦାଳଟି ନେଇ ବାହାରି ପଡ଼ । ଯେତେ ଦୂର ଘୂରି ଆସି ପାରିବ, ସେତେ ଜାଗା ଆପଣଙ୍କର ହେବ । କିନ୍ତୁ ମନେ ରଖ, ଯେପରି ବେଳ ବୁଡ଼ିବା ପୂର୍ବରୁ ଫେରି ଆସିବ ।"

ଲୁଗା କାନିରେ ଅଳ୍ପ ଚୁଡ଼ା ବାନ୍ଧି, କୋଦାଳଟି କାନ୍ଧରେ ପକାଇ, ଫିଲ୍‌ଜାନ୍ ବାହାରି ପଡ଼ିଲା । ସୂର୍ଯ୍ୟ ସେତେବେଳେ ପୂର୍ବ ଦିଗରେ ଲାଲ୍ ଟହଟହ ହୋଇ ଉଠୁଛନ୍ତି ମାତ୍ର । ଫିଲ୍‌ଜାନ୍ ପୂର୍ବ ଦିଗକୁ ମୁହଁ କରି ଚାଲିଲା । ଅଧ ମାଇଲ ବାଟ ଯାଏ ଓ ଗାତ ଖୋଳି ଗୋଟିଏ ଚିହ୍ନ ରଖେ । ଏହିପରି ସେ ପାଞ୍ଚ ଛଅ ମାଇଲ ବାଟ ଚାଲିଗଲା । ମଝିରେ ମଝିରେ ସେ ପଛକୁ ବୁଲି ସେହି ଲୋକମାନଙ୍କୁ ଅନାଉଥାଏ । ସେଇଠୁଁ ସେମାନେ ଆଉ ଦେଖାଗଲେ ନାହିଁ । କ୍ରମେ ବେଳ ବଢ଼ିବାକୁ ଲାଗିଲା ।

ପାଖରେ ଗୋଟିଏ ଗାଡ଼ିଆ ଥିଲା, ସେଥିରୁ ଟିକେ ପାଣି ପିଇ ସେ ଦକ୍ଷିଣ ଦିଗକୁ ଚାଲିବାକୁ ଆରମ୍ଭ କଲା। ଯେତେ ଦୂରକୁ ଯାଉଥାଏ ସେତେ ଅଧିକ ଭଲ ଜମି ଦେଖୁଥାଏ। ଅଧ ଅଧ ମାଇଲରେ ଚିହ୍ନ ଦେଇ ସେ ଚାଲୁଥାଏ। ଏହିପରି ପ୍ରାୟ ପନ୍ଦର ମାଇଲ ଯାଏ ବୁଲି ଯେତେବେଳେ ସେ ଫେରିବାକୁ ଇଚ୍ଛା କଲା, ସେତେବେଳେ ସୂର୍ଯ୍ୟ ପଶ୍ଚିମ ଦିଗକୁ ଢଳିଲେଣି।

ଦିଲ୍‌ଜାନ୍ ଭାବିଲା,—"ଆଜ ନାହିଁ, ଯଥେଷ୍ଟ ଜମି ହୋଇଛି, ଏବେ ଫେରିବି। ଆଗରେ ପାଞ୍ଚ, ସାତ ମାଣ ଭଲ ଜମି ଅଛି, ସେତକ ଝଟ୍ କରି ବୁଲିଆସିବି।" ତହୁଁ ସେ ଫେରିବାକୁ ଆରମ୍ଭ କଲା। ଦି'ପହର ଖରାରେ ବୁଲି ବୁଲି ସେ କ୍ଳାନ୍ତ ହୋଇଯାଇଛି। ସମୟ ଅଳ୍ପ ଅଳ୍ପ ଥାଏ—ଏବେ ତାକୁ ଅଧିକ ଛଅ ମାଇଲ ବାଟ ଚାଲିବାକୁ ହେବ ଓ ମଝିରେ ମଝିରେ ଚିହ୍ନ ମଧ୍ୟ ରଖିବାକୁ ହେବ। ସେ ଜଲ୍‌ଦି ଜଲ୍‌ଦି ଚାଲିବାକୁ ଲାଗିଲା।

ପଶ୍ଚିମରେ ସୂର୍ଯ୍ୟ କ୍ରମେ କ୍ରମେ ତଳକୁ ଖସୁଥାଏ। ସେ ସୂର୍ଯ୍ୟ ସଙ୍ଗେ ବାଜି ଲଗେଇ ଚାଲିବାକୁ ଲାଗିଲା। ମଝିରେ ମଝିରେ ଦୌଡ଼ୁଥାଏ। ସେତେବେଳକୁ ସେ କ୍ଳାନ୍ତ ଶ୍ରାନ୍ତ, ଦେହରୁ ଝାଳ ବୋହି ପଡ଼ୁଥାଏ। ତାର ସମସ୍ତ ଶରୀର ଝାଳରେ ଭିଜିଗଲା।

ଦୂରରେ ଉଚ୍ଚ ଢିପଟା ଦେଖାଯାଉଛି—ଏବେ ମୁଦ୍ଧା ସୂର୍ଯ୍ୟ ବୁଡ଼ି ନାହିଁ। ଶୋଷରେ ଦିଲ୍‌ଜାନର ତଣ୍ଟି ଶୁଖିଗଲାଣି। ସେ କୋଦାଳଟି ଫିଙ୍ଗି ଦେଇ ଚାଲିବାକୁ ଲାଗିଲା। ଦୂରରୁ ସେ ଦେଖି ପାରିଲା ଯେ ତା ସଙ୍ଗେ ଯେଉଁ ଚାକରଟି ଆସିଥିଲା, ସେ ଠିଆ-ହୋଇ ଚିତ୍କାର କରି ଶୀଘ୍ର ଶୀଘ୍ର ଯିବାକୁ ଡାକୁଛି। ଏଥର

ଧଲ୍‌କାନ୍ ତୁର ହାତରେ ଗ୍ଲାତଲୁ ଚ୍ଚୃପି ଧର ଶେଷ ଦୌଡ଼ ଦେଲ ଅଜ ଏକ ଦୌଡ଼ରେ ଢିପର କତଲ ଅପି ଶୋଇ ପଡ଼ିଲ, ଅର ଉଠିଲ ନାହିଁ ।

ବାଣ୍ଡାସୀ ଗ୍ରକରଟି ଅଶିର ଲହ ପୋଛି ପୋଛି ଗ୍ରର ହାତ ମାଟି ଖୋଳି, ସେହ ଗ୍ରର ହାତ ଜମିରେ ଧଲ୍‌କାନ୍‌କୁ କବର ଦେଲ । କେବଳ ସେହ ଗ୍ରହାତ ଜମିର ନିମନ୍ତେ ବୃଥାରେ ସେ ଏତେ ପରଶ୍ରମ କଲ ।

ହାୟରେ, ହାୟରେ ମନୁଷ୍ୟର ଲୋଭ ।

---

# ସଇ ଚରଣର ବୁଦ୍ଧି ।

ମୋହନ ପୁରର ସଇଚରଣ ହାଟରୁ ଫେରୁଛି । କାନ୍ଧରେ ଭାର । ଭାର ଦୁଇ ପାଖରେ ବସ୍ତାରେ ମାଲ୍ । ସଇ ଚରଣର ଟିକେ ମୋଟା ବୁଦ୍ଧି, ସେଥିଲଗି ସେ ଖୁବ୍ ଗର୍ବ କରେ ।

ବାଟରେ ଏକ ପଣ୍ଡିତ ସଙ୍ଗେ ତାର ଦେଖା ହେଲ । ପଣ୍ଡିତଙ୍କୁ ସଇ ଚରଣ ପ୍ରଣାମ କଲ । ପଣ୍ଡିତ ଖୁସୀ ହୋଇ ପଗ୍ରରଲେ,—"ହାଟରୁ କ'ଣ ନେଇ ଫେରୁଛ, ସଇ ?"

ସଇ ଚରଣ କହୁଲ, "ହାଟକୁ ଯାଇଥିଲି ମହଣେ ଗୃହଳ ଅଜ ମହଣେ ଡାଲ୍ ନେଇ । ଗୃହଳ ବକି ହେଲ, କନ୍ତୁ ଦର ନ ପଟିବାରୁ ଡାଲ୍‌ଟା ଫେରଇ ନେଉଛି ।"

ପଣ୍ଡିତ କହୁଲେ, "ମହଣେ ଡାଲ୍ ତ ଭାରର ଗୋଟିଏ ପାଖରେ ଅଛି, ଅନ୍ୟ ପାଖରେ ସେଇଟା କଅଣ ?"

ଗୁରୁ ଚରଣ କହୁଲା, "ବୋଝ ନେବାକୁ ସୁବିଧା ହେବ ବୋଲି ଏକ ପାଖରେ ଡାଲି ଓ ଅନ୍ୟ ପାଖର ବସ୍ତାରେ ମହଣେ ଇଟା ପଥର ଭର୍ତ୍ତି କରି ନେଉଛୁ ।"

ପଣ୍ଡିତ କହିଲେ, "ଅରେ, ଏ କଅଣ କରୁଛ ? ଇଟା ପଥର ପକାଇ ଦିଅ, ଆଉ ଡାଲିଟା ଅଧାଅଧି ଭାଗ କରି ସାଇରେ ରଖି ଦିଅ ।"

ଗୁରୁ ଚରଣ କହିଲା, "ଭାରି ବୁଦ୍ଧି ଦେଲେ ପଣ୍ଡିତେ ! ମୋ ମନକୁ ଏଥା ଆଦୌ ଆସି ନ ଥିଲା ।" ଏହା କହି ସେ ଅଧାଅଧି ଡାଲି ଭାଗ କରି ଦୁଇ ପାଖରେ ରଖିଲା । ତହୁଁ ହସି ହସି କହିଲା, "ପଣ୍ଡିତେ ଏତେ ବୁଦ୍ଧି ଆପଣଙ୍କର କେଉଁଠାରୁ ହେଲା ?"

ପଣ୍ଡିତେ କହିଲେ, "ଆମେ ଲେଖା ପଢ଼ା ଶିଖିଛୁଁ ଯେ ଏଇଟା କଣ ବୁଝି ପାରିବା ନାହିଁ ?"

ଗୁରୁ ଚରଣ କହିଲା, "ଯଦି ଆପଣଙ୍କର ଏତେ ବୁଦ୍ଧି, ତା' ହେଲେ ନିଶ୍ଚୟ ଅନେକ ଟଙ୍କା, ଘର, ବାଡ଼ି ଅଛି ?"

ପଣ୍ଡିତ କହିଲେ, "ନାହିଁ, ଭାଇ, ମୁଁ ଗରିବ ବ୍ରାହ୍ମଣ, ଥିବା ମଧ୍ୟରେ ଗୋଟିଏ କୁଡ଼ିଆ ଘର, ଦୁଇ ଗୁଣ୍ଠ ମାଣ ଜମି, ଆଉ ଗୋଟିଏ ମନ୍ଦିର ।"

ଗୁରୁ ଚରଣ କହିଲା, "ହେ, ଏତେ ବୁଦ୍ଧି ପାଇ ଆପଣଙ୍କର କେବଳ ଦୁଇ ଗୁଣ୍ଠ ମାଣ ଜମି, ଆଉ କୁଡ଼ିଆ ଘର ଛଡ଼ା ଆଉ କିଛି ନାହିଁ ? ତେବେ ଆପଣ ବୁଦ୍ଧି ନେଇ କଣ କରନ୍ତି, ପଣ୍ଡିତେ ? ମୋର ତଳ ପାଖରେ ତିନିଟା ଗୁଳ ଘର, ଗୋଟିଏ

ପାଖରେ ତିଣ ଘର, ଅଲ୍ପ ପ୍ରାପ୍ଯ ଷାଠିଏ ମାଣ ଜମି, ଗୁଡ଼ିଏ ଯୋଡ଼ା ଲଙ୍ଗଳ, ଅଧୁର କେତେ ଜଅଣ...... । ଅପଣଙ୍କ ପରାମର୍ଶ ନେବାକୁ ମୁଁ ଗଜ କୁହେଁ, ପଣ୍ଡିତେ ।"

ଏହା କହୁ ସୁଜ ଚରଣ ଗୋଟିଏ ପାଣ ବସ୍ତାରେ ସବୁ ଡାଲ ଚାଉଳ ଓ ଅନ୍ୟ ପାଖରେ ଲୁଟା ପଥର ବୋଝେଇ କରି ଗ୍ରାମକୁ ଗୁଲିଲା ।

---

Printed at the Orissa Mission Press, Cuttack, by Sri P.K. Pradhan.

# TALES FOR GROWN-UPS

Stories collected and written by the late Miss
A. N, Thompson of Cuttack, and edited by
Miss L. Quy,
Adult Literacy Convener,
Utkal Christian Council.

A grant from the Adult Education Committee
of the National Christian Council of
India is herewith gratefully
acknowledged.

CUTTACK

Printed at the Orissa Mission Press,
for
The Adult Literacy Committee U.C.C.

*2nd. Edition, 1959*
*3,000 Copies.*

*Price 6 annas*